# ଧୂର୍ତ୍ତାମି

ଲେଖକ

ରାୟସାହେବ ଶ୍ରୀ ବାଙ୍କନିଧି ପଟନାୟକ, ବି. ଏ., ବି. ଏଲ୍.
ଭୂତପୂର୍ବ ହେଡ୍‌ମାଷ୍ଟର, ବଳ୍ପି ନଗର, ବିଦ୍ୟାପୀଠ

ନୂତନ ସଂସ୍କରଣ
୧୯୫୪

ପ୍ରକାଶକ
ପଣ୍ଡିତ ଶ୍ରୀ ଆକୁଳ ମିଶ୍ର, କାବ୍ୟତୀର୍ଥ
ମେନେଜର, କଟକ ଟ୍ରେଡିଂ କମ୍ପାନୀ,
ପୋ: ଅ: ବୁଢନଟୌଳ,
କଟକ-୨

ମୂଲ୍ୟ ୫୦ ।

# ସୂଚୀ

ଅଳ୍ପରେ ପ୍ରତିଷ୍ଠିତ ହୋଇ ତାଙ୍କର ଚତୁଷ୍ପାଠୀରେ ଅଧ୍ୟୟନ କରି କେତେକର ବାପର ଜଣେ ଖ୍ୟାତ ପଣ୍ଡିତ ହୋଇ ଅର୍ଥ ଓ ସମ୍ମାନ ଅର୍ଜ୍ଜନ କଲେ, ଏ ସମସ୍ତ କଥା ଗୋଟି ଗୋଟି ହୋଇ ତାଙ୍କ ଆଗରେ ସ୍ମୃତି ଜାଗିଲା । ସେ ଜୀବନରେ ସବୁ କାର୍ଯ୍ୟରେ ଜୟୀ ହୋଇଅଛନ୍ତି, ସବୁଠାରେ ଆଶାନୁରୂପ ଫଳ ପାଇଅଛନ୍ତି, କିନ୍ତୁ ଦୈବର କଠୋର ନିୟମ ନିକଟରେ ତାଙ୍କୁ ପରାସ୍ତ ହେବାକୁ ପଡ଼ିଲା । କେବଳ ଗୋଟିଏ ସନ୍ତାନ ଅଭାବରୁ ତାଙ୍କର ସମସ୍ତ ଅର୍ଥ, ସମ୍ପତ୍ତି ଧନ ଅସାର ବୋଧ ହେଲା । ଶେଷରେ ସେ ପୋଷ୍ୟପୁତ୍ର ଗ୍ରହଣ କରିବାକୁ ମନସ୍ଥ କଲେ ।

ସଦାଶିବ ରଥେ ତର୍କାଲଙ୍କାରଙ୍କର ଖୁଡ଼ୁତାପୁଅ ଭାଇ । ଅବସ୍ଥା ସାମାନ୍ୟ ଖୁବ୍ ଅଳ୍ପ । ବୈଦ୍ୟବୃତ୍ତି କରି ସେ ବେଶ୍ ଦୁଇ ପଇସା କରି ପାଉଅଛନ୍ତି । ତାଙ୍କର ଛଅ ପୁଅ ମଧ୍ୟରୁ ମଝିଆଁ ଟିର ନାମ ଲୋକନାଥ । ତର୍କାଲଙ୍କାରଙ୍କର କାତର ପ୍ରାର୍ଥନାରେ ସଦାଶିବ ରଥେ ଲୋକନାଥଙ୍କୁ ତାଙ୍କୁ ଦେବାକୁ ସମ୍ମତ ହେଲେ । ଯେଉଁ ଦିନ ଲୋକନାଥ ତର୍କାଲଙ୍କାରଙ୍କ ଘରକୁ ଅନୁକୂଳ କରିଗଲା, ସେ ଦିନ ରଥଙ୍କ ଆଖିରୁ ଦ'ଟୋପା ଲୁହ ଗଡ଼ି ପଡ଼ିଲା । ରକ୍ତର ବନ୍ଧନ କଣ ଜମ୍ ବନ୍ଧନ ! ହେଲେ ଜଣେ ହେଉ, ଭାଇଟା ତ ଏବେ ବଡ଼ ଘରଟା ନାରଖାର ହୋଇଯିବ, ଏ କଥା ତାଙ୍କ ଦେହ ସହିଲା ନାହିଁ ।

ସେତେ ଦିନେ ତର୍କାଲଙ୍କାର ମହାଶୟ ଅଙ୍କଲରେ କୂଳ ପାଇଲେ । ଯେଉଁ ଚିନ୍ତା ଏତେ ଦିନଯାଏ ଭୂତପରି ତାଙ୍କ ହୃଦୟକୁ ଚାପି ରଖିଥିଲା, ସେ ଆଜ ଚିତ୍ତରୁ ଟିକଏ ଅବ୍ୟାହତି ପାଇଲେ ।

ନାହିଁ । ମୋର ଦେହଟା ଅବଶ ହୋଇ ଆସିଲାଣି, ମନ-ଧ୍ୱାନ୍ତରେ
ସବୁତା ଯୋଗୀ ? ଅଗ୍ନିକୁଣ୍ଡ ଦାଉଦାଉ ହୋଇ ଜଳୁଛି । ମୁଁ ସବୁବେଳ
ବୁଝିପାରିଲାଣି, ଅନ୍ତିମ କାଳ ଅତି ନିକଟ । ତେଣୁ ଲୋକ
କହୁଛନ୍ତି, ଗୋଟିଏ ପୋଷ୍ୟପୁତ୍ର କର, ନ ହେଲେ କୁଳରେ ବାତି
ଦେବ କିଏ ? ଏଥିରେ ମୋ ମନ ମାନୁ ନାହିଁ । ଲୋକନାଥ ଥାଉ
ଥାଉ ମୁଁ କାହିଁକି ଏ ବଂଶପୁରରେ ଆନ ପୁତ୍ରଟିଏ ଆଣିଦେବି ? ତୋପାଖ
ଉତ୍ତର କଣ ?" ଚଣ୍ଡାଳକାର କହିଲେ, "ମୋ କଥା ଟିକିଏ
ବୁଝୁଛ ନା, ଶୁଭଦା ? ଯେତେବେଳେ ଲୋକନାଥ ଭୂମିଷ୍ଠ ହୋଇ
ଥିଲା, ଥିଲା; କିନ୍ତୁ ଏଇ କେତେ ବର୍ଷ ହେଲା ସେ ମୋର ହୃଦୟ
ଉଦାସର ହୋଇ ଗଲାଣି । ସେ ମୋତେ ଯେଉଁ ବନ୍ଧନରେ ବାନ୍ଧିଛି,
ତାକୁ ଛିଣ୍ଡାଇଦେଲେ ମୋର ଜୀବନତନ୍ତ୍ରୀ ତା ସଙ୍ଗେ ସଙ୍ଗେ
ଛିଣ୍ଡିଯିବ ।" "ନାହିଁ ରେ, ନାହିଁ ନିର୍ବ ସରଳା," ଜଗନ୍ନାଥ ହିକିଏ
ଶପୁଥିର ପଣ୍ଡିତ କହିଲେ, "ମୁଁ ସେ କଥା କହୁ ନାହିଁ । ମୁଁ
କହୁଥିଲି ଯେ, ସେ ତ ଆମ ଦୁଇକୁଳର ଏକମାତ୍ର ଚନ୍ଦ୍ରମା, ସେ
ଯେପରି ଏ କୁଳ ସେ କୁଳ ଦୁଇକୁଳ ରକ୍ଷା କରିବ । ମୋର ତ ଆଉ
ଘରେ ଝିଅ ପିଲାଟିଏ ନାହିଁ, ଯେ ବଂଶପୁ-ଗୋଷ୍ଠି ଆଉ କିଏ
ଭୋଗ କରିବ ?"

ରଥଙ୍କୁ ଆଉ ନିବର୍ଜିବନ ହୃଦୟ ଯନ୍ତ୍ରଣା ଭାର ବହନ
କରିବାକୁ ପଡ଼ିଲା ନାହିଁ । ମୃତ୍ୟୁ ଆସି ଶୀଘ୍ର ତାଙ୍କୁ ଲୁଟି ନେଲା ।

( ୨ )

ମନୁଷ୍ୟ ଯାହା ଲୋଡ଼େ ସବୁବେଳେ ତାହା ପାଏ ନାହିଁ ।
ପୁଣି ଯାହା ପାଇବାର କଥା, ଯେତେବେଳେ ଇଚ୍ଛା କରେ ପାଏ

ନାହିଁ: ମଧ୍ୟ ସେତେବେଳେ ଦେଖୁ ନ ଥାଏ ଯେତେବେଳେ ଚାଏ । ମନୁଷ୍ୟର ଇଚ୍ଛା ଉପରେ ଯେ ତାହାର ସୌଭାଗ୍ୟ ଦୁର୍ଭାଗ୍ୟ ନିର୍ଭର କରେ ନାହିଁ, ଏହା ଶିକ୍ଷା ଦେବାପାଇଁ ହୁଏତ ଭଗବାନ ମନୁଷ୍ୟର ଭାଗ୍ୟର କଣ୍ଟାକୁ ଟିକଏ ଆଗକୁ ବା ପଛକୁ ଟଳାଇ ଦିଅନ୍ତି । ଅଥବା ନେପୋଲିଅନ ସେତେବେଳେ ଜଣ ନେତା, ସେ ଠିକ୍ ଜଣ ବୁଦ୍ଧିମାନର ନାହିଁ । ଚର୍ଚ୍ଚିଲଙ୍କର ସନ୍ତାନଟି ଜନ୍ମ କେବେ ଜଗତକୁ ଯଦି ନ ଜଣାଇଥାନ୍ତି, ସ୍ରଷ୍ଟାଙ୍କ ଚରଣତଳେ କେତେ ଆକୁଳ ପ୍ରାର୍ଥନା ଢାଳି ନ ଦେଇଥାନ୍ତେ ? କିନ୍ତୁ ବର୍ତ୍ତମାନ ସେତେବେଳେ ସେ ଘଟନାକୁ ଅଳ୍ପକାଳ ପାଇଁ ମନରୁ ଅପସାରିତ କରି ନିଜ ଭାଗ୍ୟରେ ସନ୍ତୁଷ୍ଟ ହୋଇ ଜନତାକୁ ଶିକ୍ଷା ଦେଇ ଅଛନ୍ତି, ସେତେବେଳେ ସେ ଉପାସନାସ୍ଥାନରେ ଗୋଟିଏ ପୁତ୍ରସନ୍ତାନ ଲାଭ କଲେ । ଏପରି ଆଶ୍ଚର୍ଯ୍ୟଜନକ ସୌଭାଗ୍ୟ ଲାଗି ସେ ଆଦୌ ପ୍ରସ୍ତୁତ ନ ଥିଲେ । ତେଣୁ ଏ ଘଟଣା ତାଙ୍କ ମନରେ ଗୋଟିଏ ବିପ୍ଳବ ଜନ୍ମାଇ ଦେଲା । ଏହାପରେ ପୁତ୍ରସ୍ନେହର ବନ୍ୟାରେ ଅନ୍ୟ ସମସ୍ତ ଭାବ କେଉଁଆଡେ ଭାସିଗଲା । ନୈତିକ ଚର୍ଚ୍ଚିଲଙ୍କର ସମସ୍ୟା ଆତ୍ମିକ, ଅଧ୍ୟାପନ ଅଧ୍ୟୟନ କେବଳ ଶିଶୁରକ୍ଷାରେ ପରିଣତ ହେଲା । ଚର୍ଚ୍ଚିଲଙ୍କର ହୃଦୟର ସ୍ନେହ ଆଦର ଆଉ ସମସ୍ତ ମଧୁର କୋମଳଭାବ ପୁତ୍ରର ଚତୁଃପାର୍ଶ୍ୱରେ ଅନବରତ ବେଷ୍ଟନ କରି ରହିଲା । କେବଳ ମାନବଶିଶୁ ବର୍ତ୍ତମାନ ଅପରୂପ ଭାବରେ ଚର୍ଚ୍ଚିଲଙ୍କ ହୃଦୟରେ ରାଜତ୍ୱ କଲା । ଏ ବଦଳରେ ଅତ୍ୟଧିକ ଆକର୍ଷଣ ପରେ ସେ ଅନ୍ୟ ଦିଗରେ ବିପରୀତ ଶକ୍ତିର କାର୍ଯ୍ୟ ଆରମ୍ଭ ହେଲା । ଏପରି ଟଣାଓଟରାରେ ଲୋକନାଥର କ୍ଷୀଣ ବନ୍ଧନ

ଛୁଟିପାଇ ସେ କେଉଁଆଡ଼େ ଚମ୍ପଟ୍ ଦେଇ ପଳେଇବ । ଗର୍ଜାଳଙ୍କାର ଦୁରନ୍ତ ପାଦରେ ଭଙ୍ଗା ଦୋଳରେ ମୁଣ୍ଡ କଣ୍ଟେବ ବୋଲି ଭାବିଥିଲେ । କିନ୍ତୁ ଦୁରନ୍ତ ମିଳିବାରୁ ଘୋକଟା ଖଟା ଲଡ଼ିଲା ।

ଏତେଦିନଯାଏ କେଜାଣି କାହିଁକି ଲୋକନାଥର ଚଞ୍ଚଳମନା ଆଡ଼କୁ ଗର୍ଜାଳଙ୍କାରଙ୍କର ବିଶେଷ ନଜର ପଡ଼ି ନ ଥିଲା । ଦିନେ ହଠାତ୍ ଦୈବକ୍ରମେ ସେ ବୁଝିପାରିଲେ ଯେ, ଲୋକନାଥଟା ଭାରି ମୋଟାବୁଦ୍ଧିଆ । ତାକୁ ପାଠ ପଢ଼ାଇବାର ଅର୍ଥ ଟଙ୍କାର ଶ୍ରାଦ୍ଧ ଛଡ଼ା ଆଉ କଡ଼ାକର ଲାଭ ନାହିଁ । ବିଶେଷତଃ ତାର ଦୁଷ୍ଟାମିଆ କଥା କାନରେ ଶୁଣି ଶୁଣି ସେ ଅସ୍ଥିର ହୋଇ ସାରିଲେଣି । ନା, ଆଉ ତାକୁ ପଢ଼ାଇବେ ନାହିଁ, ବରଂ ଏ ସମୟରୁ ଅନ୍ୟ କିଛି କାମ ଧରିଲେ ଲାଭ ଅଛି । ଲୋକନାଥକୁ ଡାକି କହିଲେ, "ମୁଁ ଭଲ କରି ଜାଣି ସାରିଲିଣି, ତୋର ଆଉ ପାଠଶାଠ ହେବ ନାହିଁ । ତୁ କ'ଣ ଆଉ ପିଲା ହେଉଛୁ ଯେ, ମୁଁ ତୋତେ ମୁଣ୍ଡ ମାରି ଶିଖାଇବି ? ତୋ କପାଳରେ ଯାହା ଥିଲା, ହୋଇଗଲା । ଏଣିକି ତୁ ଦେଖିଲେ ଘରସଂସାର ବୁଝାସୁଝା କର । ମୁଁ ତ ଆଉ ବୁଢ଼ା ହେଲିଣି, ଆଉ ବିଲବାଡ଼କୁ ଯାଇପାରୁ ନାହିଁ । ଜଣେ ତ ପୁଣି କିଏ ଦେଖାଶୁଣା କରିବ ।" ଲୋକନାଥ ମୋଟାବୁଦ୍ଧିଆ ଥିଲା କି ନାହିଁ, ଏକଥା ଠିକ କରି କୁହାଯାଇ ନ ପାରେ । ତେବେ ତାର କେତେ ଉଦ୍ୟାନଭ୍ରମଣ କେତେବେ ଥିଲା, ଏକଥା କେହି ଦେଖି ନାହିଁ । ଯାହାହେଉ ସଂସାର ହେବାରେ କି ସୁଖ ଅଛି, ଏ କଥା ସେ ବୁଝି ନ ଥିଲେ ସୁଦ୍ଧା ବର୍ତ୍ତମାନ ଆପାତତଃ ଯେ ପଢ଼ାପଢ଼ିର କର୍ମମ କବଳରୁ ରକ୍ଷା ମିଳିବ

ହେଲେ ସମସ୍ତ ସମୟରେ ସେ ଉତ୍ତମ ମଧ୍ୟମ ଗୋଷ୍ଠୀକରେ ରହି ନିଜ ମନର ସତ୍ୟତା ଅନ୍ୟମାନଙ୍କୁ ଦାରୁଣ ଭାବରେ ଉପଲବ୍ଧି କରାଇ ଦିଏ ।

କିନ୍ତୁ ଲୋକନାଥ ସବୁ କାହାର କଣ୍ଟା ଅନିଷ୍ଟ କରେ, ସେ ନିଜର । ତାହାର ଅନ୍ତର ମଧ୍ୟ ଅନୁଶୋଚନା ନାହିଁ, ଲଜ୍ଜାବୋଧ ପାଇଁ ଚିନ୍ତା ନାହିଁ । ତାହାର ପୋଷାକ ପରିଚ୍ଛଦରେ ଆଡ଼ମ୍ବର ନାହିଁ; ଖଣ୍ଡେ ଛିଣ୍ଡା ଗାମୁଛା ହେଲେ କାମ ଚଳିଲା । ଭୋଜନାଦିରେ ମଧ୍ୟ ଆଗ୍ରହ ନାହିଁ—ଘରେ ମୋଟା ଖଦଡ଼ା ଯାହା ପାଇବ, ସେ ସେଥିରେ ସନ୍ତୁଷ୍ଟ । ଲୋକନାଥ ଆସିଲା ଦିନଠାରୁ ତର୍କାଳଙ୍କାରଙ୍କ ବ୍ରାହ୍ମଣୀ ତାକୁ ସ୍ନେହଚକ୍ଷୁରେ ଦେଖି ନାହାନ୍ତି । ସେ କେତେ ଅବୋଧ ନୁହନ୍ତି ଯେ, ପର ପୁଅକୁ ପୁଅ ବୋଲି ଜ୍ଞାନ କରି ଗୌରବ ବୋଧ କରିବେ । ବରଂ ସେ ନିଜେ ଯେ ପୁତ୍ରହୀନା, ଲୋକନାଥକୁ ଦେଖି ଏକଥା ସେ ରତ୍ନର ପରିଣାମ ସଞ୍ଚିତ ଦୁଃଖରେ ରୂପେ ଅନୁଭବ କଲେ । ଏ ଭାବ ଏ ପର୍ଯ୍ୟନ୍ତ ତାଙ୍କ ମନମଧ୍ୟରେ ଘୁଞ୍ଚାଇ ହୋଇ ତାଙ୍କୁ ପୋଡ଼ ଦେଉଥିଲା । କିନ୍ତୁ ଲୋକନାଥର ଜନ୍ମ ଅରେ ପୂର୍ବର ବ୍ରାହ୍ମଣୀ ଆଜି ଅନ୍ତରବ୍ୟଥାକୁ ଚପାଇ ରଖିପାରିଲେ ନାହିଁ । ଈର୍ଷାର ଅଗ୍ନି ଦ୍ୱିଗୁଣ ତେଜରେ ଜଳି ଉଠିଲା । ସେ ଦୁଃଖରେ ଅନ୍ୟ କାହାର ସାହାଯ୍ୟ ଅପେକ୍ଷା ନ କରି ନିଜେ ଲୋକନାଥ ଉପରେ ଅତ୍ୟାଚାର କରିବା ଲାଗି ନାନା ଉପାୟ ଅବଲମ୍ବନ କଲେ । କିନ୍ତୁ ଲୋକନାଥର ସରଳ, ଅକପଟ ସ୍ୱଭାବ ନିକଟରେ ସବୁ ବ୍ୟର୍ଥ ହୋଇଗଲା । ଶେଷରେ ଏଥିରୁ ନିରସ୍ତ ହୋଇ ବ୍ରାହ୍ମଣୀ ସ୍ୱାମୀଙ୍କର ଆଶ୍ରୟ ନେଲେ । ସ୍ୱାମୀ ସ୍ତ୍ରୀଙ୍କ ମଧ୍ୟରେ ବାକ୍ୟାଳାପ-ପ୍ରସଙ୍ଗ

ଧୂମ୍ରସ୍ୱା ]

କେତେଦୂର ପ୍ରଗାଢ଼ ଥିଲା, ତାହା ଠିକ୍ ବୋଲଯାଇ ନ ପାରେ; ତେବେ ଜନବନ୍ଧୁର ଜନ୍ମଦିନଠାରୁ ସ୍ତ୍ରୀଙ୍କ ପ୍ରତିପତ୍ତି ସ୍ୱାମୀଙ୍କଠାରେ ଟିକ୍ ବଢ଼ିଯାଇଛି । ବ୍ରାହ୍ମଣୀ ଏହି ସୁଯୋଗ ପାଇ ଆକାର ଇଙ୍ଗିତ, କଥାବାର୍ତ୍ତା ନାନା ଉପାୟରେ କ୍ରମେ ତର୍କାଳଙ୍କାରଙ୍କୁ ଲୋକନାଥ ବିରୁଦ୍ଧରେ ଉତ୍ତେଜିତ କରିଦେଲେ । ଯେଉଁ ସ୍ତ୍ରୀ ନିଜ ସ୍ୱାମୀଙ୍କୁ ଆପଣାର ମୁଠାରେ ରଖି ନ ପାରିଲା, ତାହାର ନାରୀଜନ୍ମ ଧାରଣ ଫଳ କଣ ? କେତୋଟା ଦିନରେ ତର୍କାଳଙ୍କାର ବୁଝିଗଲେ ଯେ, ଲୋକନାଥଙ୍କୁ ଆଣି ସେ ଏକ ଅଧମ ଭୁଲ କରିଅଛନ୍ତି । ତର୍କାଳଙ୍କାରଙ୍କ ମନରେ ଏକଥା ଯେ ଆଦୌ ଉଦୟ ହୋଇ ନ ଥିଲା, ତାହା ନୁହେଁ; ତେବେ ସ୍ତ୍ରୀ ଶବ୍ୟତମ୍ ଦେଇ ତାଙ୍କ ଭବିଷ୍ୟତର କୁନ୍ଥବେଟର ଶତ ଟିକିଏ ଭଲ କରି ଦେଖାଇ ଦେଲେ । ବୃଦ୍ଧ ମଧ୍ୟ ଏହି ଚିନ୍ତାରେ ଅସ୍ଥିର ହୋଇ ଉଠିଲେ । ପଛିରେ ଜେନେଇର ଭବିଷ୍ୟତରେ ଘୋର ଅକଲ୍ୟାଣ ହେବ, ସେ କଥା ଦୂର ନ କରିବାଯାଏ ମନରେ ଆଉ ଶାନ୍ତି କାହିଁ ? ବ୍ରାହ୍ମଣୀ ମଧ୍ୟ ବେଳକାଳ ଦେଖି ଟିକିଏ ଟିକିଏ ଆହୁତି ପକାଇବାକୁ ଲାଗିଲେ ।

ଏଣେ ଜନବନ୍ଧୁ ପାଠଶାଳାରୁ ଫେରିବା ବେଳେ ଅନ୍ୟ ଗୋଟିଏ ପିଲା ସହିତ ତାହାର କଳି ହେଲା । ବାକ୍ଯୁଦ୍ଧରେ କିଛି ମୀମାଂସା ନ ହେବାରୁ ଉଭୟଙ୍କ ମଧ୍ୟରେ ହାତ ଚଳାଚଳି ଆରମ୍ଭ ହେଲା । ଅନ୍ୟାନ୍ୟ ଛାତ୍ରମାନେ କୌତୂହଳ ହେଉ ଏ ଆନନ୍ଦ ଉପଭୋଗରୁ ବଞ୍ଚିତ ହେବାକୁ ଇଚ୍ଛୁକ ନ ଥିଲେ ସୁଦ୍ଧା କେତେ ଜଣ ମଧ୍ୟସ୍ଥତାର ଅଭିନୟ ଦେଖାଇଥିଲେ । କିନ୍ତୁ ଏଥିରେ

କଷ୍ଟ ଫଳ ହେଲା ନାହିଁ । ଶେଷରେ ବାହୁବଳ ଏ ବୁଦ୍ଧିବଳର ନିଷ୍ପତ୍ତି କରି ଦେଲା । ଘନବନ୍ଧୁ ସଙ୍ଗୀମାନଙ୍କ ସାହାଯ୍ୟ କରୁଥାଇ ମଧ୍ୟରେ ଚଞ୍ଚଳ ପ୍ରତିଦ୍ୱନ୍ଦ୍ୱୀକୁ ଭୂତଳଶାୟୀ କରି ଦେଇ ଜୟଧ୍ୱଜା ପରିବର୍ତ୍ତରେ ଉକ୍ତ ବାଳକର ପୁସ୍ତକର ଛିନ୍ନପତ୍ରସବୁ ଉଡ଼ାଇ ଉଡ଼ାଇ ବିଜୟୋଲ୍ଲାସରେ ଗୃହାଭିମୁଖରେ ଅଗ୍ରସର ହେଲା । ଏପରି ସମୟରେ ଲୋକନାଥ ବଳିଆର୍ ସେହି ସେଠାରେ ଉପସ୍ଥିତ । ସେ ଭୂମିରେ ପଡ଼ିଯାଇଥିବା ବାଳକଟିକୁ ଉଠାଇ ତା ମୁଣ୍ଡରୁ ସେଉଁ ରକ୍ତ ବୋହୁଥିଲା, ତାହା ପୋଛି ଦେଲା । ଗ୍ରାମର ପିଲାମାନଙ୍କ ମଧ୍ୟରେ ଲୋକନାଥର ଏକଚ୍ଛତ୍ର ସାମ୍ରାଜ୍ୟ । ସେ ସମସ୍ତଙ୍କୁ ଆନ୍ତରିକ ସ୍ନେହ କରୁଥିଲା ଏବଂ ସମସ୍ତେ ତାର ନିରପେକ୍ଷ ବିଚାରରେ ସନ୍ତୁଷ୍ଟ ଥିଲେ । ଉପସ୍ଥିତ କ୍ଷେତ୍ରରେ ସେ ଘନବନ୍ଧୁର ଦୁଷ୍ଟ ଦୋଷ ଦେଖିପାରି ସମସ୍ତଙ୍କ ସମକ୍ଷରେ ତାକୁ ଚଟକଣିଟାଏ ଦେଇ ଭବିଷ୍ୟତ ପ୍ରତି ସତର୍କ କରାଇ ଦେଲା । ଘନେଇ ତହସିଲଦାରଙ୍କର ଏକମାତ୍ର ପୁଅ, ଶରଜାଳ ଆଦର ଯତ୍ନର କୋଳରେ ଲାଳିତ; ତା ଦେହରେ କେହି ହାତ ଛୁଇଁବା ଦୂରେ ଥାଉ, କେବେ କେହି ତାକୁ କୁ କଥା କହି ଦେଇ ନାହିଁ । ସେ ଏ ଘୋର ଅପମାନ ସହି ନ ପାରି କୋହରେ ଭାଉ ଭାଉ ଘରକୁ ଫେରିଗଲା । ଘରେ ଗୋଡ଼ ଦେଲାମାତ୍ରେ ତାହାର ମନର କ୍ରୋଧ ପ୍ରବଳତର ହୋଇ ଜଳି ଉଠିଲା ଏବଂ ଗଳାର ସ୍ୱର ସପ୍ତମକୁ ଚଢ଼ାଇ ଦେଇ ସେ ଚିତ୍କାର କରି ଉଠିଲା । ଘନାବୋଉ ଦାଣ୍ଡିଶାଳରେ ଥିଲେ । ସେ ପିଲାଟିର କଷ୍ଟ ଅକଲ୍ୟାଣ ଆଶଙ୍କା କରି ହଠାତ୍ ଦୌଡ଼ି ଆସୁ ଆସୁ ତାଙ୍କ ମୁଣ୍ଡ ଦୁଆରବନ୍ଧରେ ବାଜି

ନମ କଳଙ୍କିତ ବସିଗଲେ । ଉତ୍ତର ମନର ସ୍ୱର ମନରେ ମାରି ନେଇ ଯାଇ ଫେରିଲେ ପାଖରୁ ସବୁ ହାଲ ହକିକତ ଶୁଣିଲେ । ଶୁଣି ତାଙ୍କର ଧୈର୍ଯ୍ୟଚ୍ୟୁତ ହେବାର ସମ୍ଭାବନା ହେଲା । ତୃପ୍ତି ମନରେ ଆନନ୍ଦ ମଧ୍ୟ ଟିକିଏ ହେଲା ଯେ, ସେ ଏତେଦିନ ଯେଉଁ ସୁବିଧା ଖୋଜୁଥିଲେ, ତାହା ଆପେ ଆଜି ଉପସ୍ଥିତ । ଲୋକନାଥଙ୍କୁ ଦେଖିପାରି ମନକୁ ଟିକିଏ ଦୃଢ଼ କଲେ । ପୁଅ ଉପରେ ରାଗିଯାଇ କହିଲେ, "ହରିଗ ଟୋକା, ଯା—ତୁ ମୋ ଘରୁ ଯା । ହେଉଛୁ କିଏ କି ? ଅନ୍ଧାର ହବ; ତାଙ୍କେ ଧନମାନ ଦେଖି ହାଡ଼ ପାଣି କ ମାଡ଼ି ମାରିବେ ।" ଏ କଥା କହି ଦୀନବନ୍ଧୁଙ୍କୁ ଦୁଇ ଚାପଡ଼ା ମାରି କୋରରେ ଠେଲି ଦେଲେ । ଦୀନବନ୍ଧୁ ମୁହଁମାଡ଼ି ପଡ଼ିଗଲା କେବଳ ତାଙ୍କ ଖଣ୍ଡେ ଖପର ତା ମୁଣ୍ଡରେ ପଶିଯାଇ ଝରଝର ହୋଇ ରକ୍ତ ବୋହିଗଲା । ଫକାବୋଉ ଏହା ଦେଖି ମୂର୍ଚ୍ଛା ଗଲାନାହିଁ ହେଲେ ନାହିଁ । ଲୋକନାଥଙ୍କୁ ନିକଟରେ ଦେଖି ପୁଅ ଆଡ଼କୁ ଚାହିଁ 'ମର' ବୋଲି ଜନ୍ତୁ ରାଗରେ ଗରଗର ହୋଇ ବାହାରିଗଲେ । ଲୋକନାଥ କାରଣ ବୁଝିବାକୁ ଚେଷ୍ଟା ନ କରି ହଠାତ୍ ଦୀନବନ୍ଧୁକୁ ଧୂଳିରୁ ଉଠାଇ ଯୋଡ଼ାକନା ଖଣ୍ଡେ କଟା ସ୍ଥାନରେ ମାଡ଼ି ଦେଇ ତା ଉପରେ ଟୋପିଏ ପଟି ବାନ୍ଧି ଦେଲେ ଏବଂ ମୋ ବାପା, ମୋ ଧନ, କହି ତାକୁ କୁନି କରି ଦେଇ ଶୁଆଇ ପକାଇଲେ । ଲୋକନାଥ ସେ ଦିନ ଫେରିଲେ ଉପନୟନ ଲାଗି କିଛି ଟଙ୍କାର ଯୋଗାଡ଼ କରିବା ପାଇଁ ଗୋଟିଏ ପାଖ ଗାଁକୁ ଯାଇଥିଲେ, କିଛିକ୍ଷଣ ପରେ ଆସି ପହଞ୍ଚିଲେ । ଝରକାରେ ଦେହରୁ ଖାଲି ବୋହି ଯାଉଛି; ତଣ୍ଟିରେ ପୁଣି ଦକାଡ଼ୁ ଥିଆ ଦିଆ ନାହିଁ । ଆପେ ଦେଖନ୍ତି ତ ଘରେ

ସବୁ ଶୂନ-ଶାନ । "ଜନେଇ ରେ" "ଜନେଇ ରେ" କେତେ ଥର ଡାକ ଦେଇ ଜବାବ ପାଇଲେ ନାହିଁ । ଘରଭିତରକୁ ଯାଇ ଦେଖିଲେ, ଜନେଇ ମୁଣ୍ଡରେ ଗୋଟିଏ ପଟି ବନ୍ଧା, ନିଜ ଘର ଖଟରେ ଶୋଇଛି, ଆଉ ରୁକ୍ମଣୀ ପିଣ୍ଡା ଉପରେ ଭୂଇଁରେ ପଡ଼ିଛନ୍ତି । ସେ ପଡ଼ିଲେ କିଛି ବୁଝି ପାରିଲେ ନାହିଁ । ପରେ ରୁକ୍ମଣୀଙ୍କି ଉଠାଇବାରୁ ସେ ବଜ୍ରକଣ୍ଠରେ ଉଠିଲେ । ତାଙ୍କର ଚକ୍ଷୁ ରକ୍ତବର୍ଣ୍ଣ, କେଶ ଅପରିଷ୍କୃତ ଓ ମୁଖ ମେଘାଚ୍ଛନ୍ନ । ଚନ୍ଦ୍ରକାନ୍ତ କିଛି ପଚାରିବା ଆଗରୁ ସେ କ୍ରନ୍ଦନ ସ୍ୱରରେ ଚିତ୍କାର କରି ଉଠିଲେ—"ମୋ ଜନେଇ ନାହିଁ, ମୋ ଦୁର୍ଯ୍ୟୋଧନ ନାହିଁ ; ସେ ଅଧିକ ତାକୁ କଣ ଆଉ ଜୀବନରେ ଦେଖିବ ?"

"କଣ, ହେଲା କଣ ? ଜନେଇର କଣ ହୋଇଛି ?" "ମୁଁ ଆଜି ଏ ଘରର ପୁଅକୁ ଦେଲେ ରଖିବି ନାହିଁ ଲୋ ମା, ଆଉ କଣ ମୁଁ ମତେ ଜନେଇକି ଦେଖିଥାନ୍ତି ?" ଏହି କଥା କହି ରୁକ୍ମଣୀ କ୍ରନ୍ଦନର ସ୍ୱର ଆଉ ଟିକିଏ ବଢ଼ାଇ ଦେଲେ । କେତେବେଳେ ସ୍ୱାମୀଙ୍କୁ ଗାଳି ଉକୁଣ୍ଠା ଦେଇ ଆନୁପୂର୍ବିକ ସବୁ ଘଟଣାଗୁଡ଼ାକ ବର୍ଣ୍ଣନା କରି ପାରିବାମାତ୍ରେ କହିଦେଲେ ଯେ, ଜନେଇକି ବନ୍ଧୁପୋଷରେ ଜଳନ-କାଠ ମାଡ଼ ମାରି ତା ମୁଣ୍ଡ ଦୁ'ଫାଳ କରି ଦେଇଛି, ବଞ୍ଚିବ କି ନାହିଁ ସନ୍ଦେହ, ସେ ନଥିଲେ ଏତେବେଳକୁ ଜନେଇ ମଶାଣି ପଦାରେ ଗଡ଼ୁଥାନ୍ତା । ରୁକ୍ମଣୀ ଅନେକ ଥର ଲୋକମାନଙ୍କର ହିଂସ୍ର-ବୃତ୍ତିର ନମୁନା ପାଇଲେଣି, କିନ୍ତୁ ପରର ପୁଅ ନାଲେକଣ ସହିବ, ଏମିତି କିଛି ଜାଣନ୍ତି ନାହିଁ । ଜନେଇ ପ୍ରସଙ୍ଗ ମନ୍ଦିର ଉପରେ ଲୋକମାନଙ୍କର ଏତାଦୃଶ ଦୃଷ୍ଟି କରି ଦେଇଛନ୍ତି କି ନା, ସେଥିଲାଗି ତା ଉପରେ

ଲୋକାର ଏମିତ ଗର । "ମୂର୍ଖ ମାଇଲେ ପାଜ ପଢ଼, ଦେବଙ୍କ ପଢ଼େ ବରିଁ କର ।" " ମନୋଷ ପୁଅ, ଶୂନ୍ୟ ବୁଅ; ସେ କ ମନେବେ ଆପଣାର ହୁଏ", ଇତ୍ୟାଦି ।

ଏବେ ତ ତର୍କାଳଙ୍କାର ନଗର୍ ଗ୍ରାମର କାର୍ଯ୍ୟବରି ଗ୍ରାମାନ୍ତରକୁ ଯାଇଥିଲେ, ନସଥିରେ ବଶ୍ଵନ ହୋଇ ଫେରି ଆସିଛନ୍ତି; ଏଣେ ଗୁଧା, ତୃଷ୍ଣା ଓ ପଥକ୍ଲାନ୍ତିରେ ଶରୀର ମନ ଅବସନ୍ନ । ତା ଉପରେ ଲୋକନାଥର ଏମନ୍ତ କାଣ୍ଡ ଶୁଣି ଆଉ ଧୈର୍ଯ୍ୟ ଧରି ପାରିଲେ ନାହିଁ । ଜଳନ୍ତା ନିଆଁରେ ଘୃତ ପଡ଼ିଗଲା । ଲୋକନାଥ ଭାଗବତ ଘରେ ବସିଥିଲା, ବାପାଙ୍କ ଫେରିବା ଖବର ପାଇ ଘରକୁ ଆସିଲା । ତାକୁ ଦେଖି ତର୍କାଳଙ୍କାର ତା ମୁହଁକୁ ଅନାଇଁ ପ୍ରଥମେ ଗୁମ୍ ମାରି ଛିଡ଼ା ହୋଇଗଲେ । ଟିକଏ ପରେ ଗମ୍ଭୀର ସ୍ୱରରେ କହିଲେ, "ଦେଖ ଲୋକେଇ, ମୁଁ ଆଗରୁ ଜାଣି ନ ଥିଲି । ଏବେ ଜଣେ ମୋ ଆଖି ଫିଟିଲା । ହଉ, ମୁଁ ଆଜିଠାରୁ ପଣ କରୁଛି, ତୋର ମୋ ଘରେ ଆଉ ସ୍ଥାନ ନାହିଁ । ତୁ ଆଜିଠାରୁ ମୋ ଦୁଆର ମାଡ଼ିବୁ ନାହିଁ । ତୋ ସଙ୍ଗେ ମୋର ସମ୍ପର୍କ ଆଜିଠାରୁ ଛିଣ୍ଡିଲା ।" ଲୋକନାଥ ଏ କଥା ଶୁଣି ବଜ୍ରାହତ ଅବାକ୍ ହୋଇଗଲା । ଏଭଳି ଦଣ୍ଡ କ କାରଣ, ସେ ଠିକ୍ କରି ପାରିଲା ନାହିଁ । କିଛିକ୍ଷଣ ପରେ ଟିକଏ ପ୍ରକୃତିସ୍ଥ ହୋଇ ସାହସ ଅବଲମ୍ବନ କରି କହିଲା, "ବାବା ! ମୁଁ କଣ ଦୋଷ କରିଛି କିଛି ବୁଝିପାରୁନାହିଁ ।" ଏ କଥା ଶୁଣି ତର୍କାଳଙ୍କାର ଗର୍ଜନ କରି କହିଲେ, "ତୁ ମୋ ଆଗରୁ ଶୀଘ୍ର ଚାଲିଯା' । ତୋର ଆଉ କଥା ଶୁଣି ମୋର ଗୋଡ଼ଠାରୁ ମୁଣ୍ଡ

ପର୍ଯ୍ୟନ୍ତ ଜନ୍ମନ୍ତି, ତୁ ଆଉ କେଉଁଠି ମୋତେ ଜଣାନା । ଏଥିରୁ ଆଉ କିଛି କହି ଆସ ନାହିଁ ।" ଏତକ କହି ଚନ୍ଦ୍ରଶେଖର ସେଠାରୁ ଗୁଚିଗଲେ । ଲୋକନାଥ ମଧ୍ୟ ବଗ ଆଗକୁ ଥରେ ଉକରୁଣ ଦୃଷ୍ଟି ପକାଇ ସେଠାରୁ ଚାଲିଆସିଲା ।

ସେ କେଉଁଆଡ଼େ ଯିବ, କିଛି ସ୍ଥିର କରି ପାରିଲା ନାହିଁ । ତାହାର ପ୍ରତି ପଦକ୍ଷେପରେ ପୃଥିବୀ ଘାରିଣ ଖାଇବାକୁ ଲାଗିଲା; ତା ଉପରେ ଆକାଶ ସେପରି ଭାଙ୍ଗି ପଡ଼ିଲା । ସେ ଦିନର ଘଟଣା ଗୋଟି ଗୋଟି ହୋଇ ତା ମନରେ ଉଦୟ ହେଲା । ଅନନ୍ତର ଅନେକ କ୍ଷୁଦ୍ର ସାମାନ୍ୟ ଘଟଣା ନିଜ ନିଜର ଗୂଢ଼ ଅର୍ଥସମ୍ଭାର ଘେନି ତା ନିକଟରେ ଉପସ୍ଥିତ ହେଲେ । ପ୍ରତ୍ୟେକ ପଦଟିରଠାରୁ କଳ୍ପିତ ହେଲେ ସୁଦ୍ଧା ସମସ୍ତେ ତାହା କାନରେ ଏକ ନିଦାରୁଣ ସତ୍ୟ ଘୋଷିତ କରି ଦେଇଗଲେ—"ତୁ ସେ ଗୋଷ୍ପଦ !"

( ୩ )

ଲୋକନାଥ ବର୍ତ୍ତମାନ ସଂସାରରେ ନିତାନ୍ତ ଅସହାୟ, ନିତାନ୍ତ ଅନାଥ । ସେ ଏ ପର୍ଯ୍ୟନ୍ତ ଦାରଣଟିଶୂ ପରି ଖେଳ ଧୂଳିଆଡ଼େ ଆନନ୍ଦ ମନରେ ନାଚ ବୁଲୁଥିଲା । ଧୂଳିଖେଳ ପରି ମନେ କରୁଥିଲା, ତାର ଜୀବନର ଖେଳ ମଧ୍ୟ ସୁଖରେ ସୁଖରେ ଶେଷ ହୋଇଯିବ । କିନ୍ତୁ ସେ ସ୍ୱପ୍ନରୁ ଉଠି ଦେଖିଲା, ବାଲିଘରରେ ସଂସାର ଚଳେ ନାହିଁ, ତାକୁ ସତରେ କାଠି କୁଟା ମାଟି ପଥର ଲଗାଇ ଖଣ୍ଡିଏ ଘର ତିଆର କରିବାକୁ ହେବ । ଦେଖିଲା, ଜୀବନଟା କେବଳ ହସ ଖେଳରେ, ଆମୋଦ ଆହ୍ଲାଦରେ ଗଢ଼ା ନୁହେଁ;

କାତର ହୋଇ ତାକୁ ଆଶ୍ରୟ ଦେବାକୁ ପ୍ରସ୍ତୁତ ହେଲ । ବିଧବାର ଗାଁ ମୁଣ୍ଡରେ ବଣୁଆଟିଏ ଘେଷ୍ଟ କୁଡ଼ିଆ ଘର—ଘରକୁ ଲାଗି ଖଣ୍ଡିଏ ଗଳି ବାହାରିଛି । ସବୁଜ ନନ୍ଦାଦର ଏକମାତ୍ର ଉପାୟ ତାହାର ଗାଈଟି ମଣଗଲ୍ ଘରଠାରୁ ଦୁଇ ଖଣ୍ଡିକ ଜମି ଚଷୁଛି । ସେ ଲୋକନାଥଙ୍କୁ ଡାକି କହିଲା, "ବାପା, ତୁ ତ ଏବେ ଆସୁଛ ପଢ଼ ହେଲୁଣି, କିଛି ହେଲ ନାହିଁ । ଏଣୁଷଣି ଲୋକେଙ୍କା ଦିନ ଟମା ଗୁଳଦାର ଖଣ୍ଡିକରେ ବୋହୂକୁ ଆଣି ଟିକିଏ ମୁଣ୍ଡ ଗୁଞ୍ଜି ରହିବା' । ତଥ୍ଯ ଘର ମିଳିଲେ ମେଠାକୁ ଉଠିଯିବୁ ।" ନିଃସହାୟା ବିଧବାଠାରୁ ଏପରି ଅଯାଚିତ ଅନୁଗ୍ରହ ପାଇ ଲୋକ-ନାଥର ଚକ୍ଷୁ ଛଳ ଛଳ ହୋଇ ଆସିଲ ।

ଲୋକନାଥ ଆଜି ପାର୍ବତୀ ଆସି କୁଡ଼ିଆର ଖଣ୍ଡିକରେ ଆଶ୍ରୟ ନେଲେ । ପାର୍ବତୀର ମନରେ ଟିକିଏ ସାନ୍ତ୍ୱନା ହେଲ—ତାହା ହେଲେ ସ୍ୱାମୀଙ୍କ ଦୁଃଖରେ ମୁଁ ଦୁଃଖିନୀ ହୋଇ ପାରିବ । ଲୋକନାଥ ମନରେ ଚିନ୍ତା ହେଲ—ଶୋକ ଦୁଃଖରେ ଅନଭ୍ୟସ୍ତା ଯୁବତୀ ସ୍ତ୍ରୀକୁ ମୁଁ କପରି ପ୍ରବୋଧ କରିବ ।

ଲୋକନାଥ ନିଜ ଗ୍ରାମକୁ ଯାହାର ଯାହାଠାରୁ ସାହାଯ୍ୟ-ପ୍ରାର୍ଥନା କରି କରି ଥାଏ । ମଝିରେ ଭେଟିବ କେତେବ ପାଖ ଗାଁକୁ, କେତେବ କଟକକୁ ବୁଲିଯାଇ ଖୋସାମଦ କରି ଚାକିରୀର ଚେଷ୍ଟା କରେ । କିନ୍ତୁ 'ମାଗିଲାଯୋଗ୍ୟ ଚାକିରୀ ଖୋଜିବାଏ' । କେଉଁଦିନ ଜୁଟଏ, କେଉଁଦିନ କିଛି ନାହିଁ, ଏହିପରି କଷ୍ଟ ମଧ୍ୟରେ ଦୁଇ ପ୍ରାଣୀ ଚଳୁଥାଆନ୍ତି ।

ଗ୍ରାମର ଅନେକ ଲୋକ ଅନେକ ଥର ଲୋକନାଥକୁ କହିଲେଣି—ଥରେ ପାଇଁ ତର୍କାଳଙ୍କାରଙ୍କୁ କହ, ଯାହା ହେଲା ତ ହେଲା, ଏବେ ମୋର ଜମିବାଡ଼ ମୋତେ ଦିଅ, ମୁଁ ଆଉ କେତେଦିନ ଏପରି କଷ୍ଟରେ ଚଳିବି ? ଲୋକନାଥ ଶୁଣି ନ ଶୁଣିଲା ପରି ହୁଏ । କେବେ ଅବା କହେ, "ମିଛରେ ତୁଣ୍ଡ ହଲେଇବ କାହିଁକି ?" ଦିନେ ଗ୍ରାମର ମୁଖିଆ ମୁଖିଆ କେତେ ଜଣ ଲୋକ ମେଳ ହୋଇ ତର୍କାଳଙ୍କାରଙ୍କ ପାଖରେ ଲୋକନାଥ କଥା ପକାଇଲେ । ତର୍କାଳଙ୍କାର କହିଲେ, "ଲୋକନାଥର କି ସମ୍ପତ୍ତି ଗୁଡ଼ାଏ ଅଛି ଯେ ମୁଁ ତାକୁ ଦେବି ? ସମସ୍ତ ବିଷୟ ତ ହରବଲ୍ଲଭନା ବନ୍ଧି ବନ୍ଧକ କରି ଖାଇଥିଲେ, ମୁଁ ସେଥିରୁ ନିଜଟଙ୍କା ଖଲାସ କରିଅଛି, ଆଉ କେତେକ ବାକି ଦାମରେ ମୁକୁଳାଇ ଅଛି । ମୋ ଟଙ୍କାଗୁଡ଼ାକ କଣ ଏବେ ବାଏ ବାଏ ଉଡ଼ିଯିବ ?"

ସଦାଶିବ ନନ୍ଦ କହିଲେ, "ହଜୁ, ସେକଥା ନ ହେଲା, ତୁମେ ତ ତାକୁ ପୋଷ୍ୟପୁତ୍ର କରିଥିଲ । ସେ ତୁମ ସମ୍ପତ୍ତିରୁ ତ ଗୋଟାଏ ଭାଗ ପାଇଥାନ୍ତା ?"

ତର୍କାଳଙ୍କାର—"ମୁଁ ତାକୁ ଦିନାକେତେ ଘରେ ରଖିଥିଲି, ଏଣିକି ଆଉ ନ ରଖିଲି । ମୁଁ ତ ଆଉ ପୋଷ୍ୟପୁତ୍ର ବୋଲି ତାକୁ ରେଜେଷ୍ଟ୍ରି କରିଦେଇ ନାହିଁ ଯେ, ସେ ମୋ ସଙ୍ଗରେ ଭାଗ ବସେଇବ ?"

ଏକଥା ଶୁଣି ଗୋବିନ୍ଦ ମିଶ୍ର କହିଲେ, "ଗୁରୁ ହୋ ! ଏତେ ପୁଞ୍ଜିରେ ଆଉ କାମ କଣ ? ତୁମେ ତ ଆଗରେ ଦେଖୁଛ, ସେଇଟା

କ କଲବଲ ହେଉଛନ୍ତି । ପଚାରନ୍ତୁ କିଏ କଣ ନେଇଯିବ ? ବଞ୍ଜ, ତାଙ୍କୁ ଟେକିବା ମାତ୍ରେକେ କଣ୍ଟି ନିଦାଇ ଦୁଇଟା ପ୍ରାଣୀଙ୍କୁ ବଞ୍ଚାଇ ନିଅ । ଆମେ ସମସ୍ତେ ତାହାଙ୍କଣି ବହୁତ କହୁଛୁ, ଆଉ ମନରେ କିମ୍ବା କର ନାହିଁ । ତୁମେ ତ ବୁଝିବା ଲୋକ, ତୁମକୁ ଆଉ କଣ ବୁଝେଇବୁ ?”

ତର୍କାଳଙ୍କାର – “ଆପଣମାନେ ମୋତେ କ୍ଷମା କର । ମୋତେ ଆଉ କାହିଁକି ବିରକ୍ତ କରୁଛ ? ମୋ କଥା ତ ମୋତେ ବଳେଇଲାଣି । ଝିଅଇର ମଙ୍ଗଳକୃତ୍ୟ ବାବଦ ଖରଚଟା ଏପର୍ଯ୍ୟନ୍ତ ମୋ ଉପରେ ଚଢ଼ି ବସିଛି । କଣ କରିବି, ମୁଁ କିଛି ଠିକଣା କରିପାରୁ ନାହିଁ ।”

ଏହା କହି ତର୍କାଳଙ୍କାର ସେଠାରୁ ଚାଲିଗଲେ ଏବଂ ଅନ୍ୟାନ୍ୟମାନେ ମଧ୍ୟ ଘରଦ୍ୱାର ଆଡ଼କୁ ଅବାଅଝ ହୋଇ ଗୋଟି ଗୋଟି ହୋଇ ଖସିଲେ । ବୈଦ୍ୟ ଉଠି ନିଃଶ୍ୱାସଟାଏ ପକାଇ କହିଲେ, “ଏ ଅନ୍ୟାୟ ଧର୍ମ ସହିବଟି କି ?”

× × × ×

ଏବର୍ଷ ନଅଙ୍କ—ସେହି ନଅଙ୍କ, ଯାହାର ସ୍ମରଣ ମାତ୍ର ଏପର୍ଯ୍ୟନ୍ତ ଉତ୍କଳବାସୀର ହୃଦୟରେ ରକ୍ତାକ୍ଷରରେ ଲେଖା ରହିଅଛି । ଚାରିଆଡ଼େ ଅନାହାରର ଆର୍ତ୍ତନାଦ, ମଡ଼କର ହାହାକାର । ଚାରିଆଡ଼େ ଦରିଦ୍ରର ସତୃଷ୍ଣ ନୟନରେ ଅନ୍ନର ପ୍ରତ୍ୟାଶା, ଧନୀର ଆତଙ୍କରେ ରାତ୍ରି-ଜାଗରଣ । ମଫସଲର କଥା ଦୂରରେ ଥାଉ, ସେ ବର୍ଷ କଟକ, ପୁରୀ ପ୍ରଭୃତି

ସହରରେ ଧାନ ଚାଉଳ ଦୁଷ୍ପ୍ରାପ୍ୟ । ଯାହାର ଜମି ନାହିଁ, ତାହାର ତ ସବୁଦିନ ଉପବାସ; ଯାହାର ଖାଲି ଟଙ୍କା ଟୋକର ଅଛି, ତାହାର ମଧ୍ୟ ଉପବାସ । ଲୋକନାଥର ଏହିମଧ୍ୟରେ ଟିକଏ ଉପବାସର ବୃଦ୍ଧି ହୋଇଅଛି । ପାର୍ବତୀ ଛଡ଼ା ଆହୁରି ଚାରୋଟି—ଦୁଇଟି ପୁଅ, ଗୋଟିଏ କନ୍ୟା—ପୋଷ୍ୟ । ଲୋକନାଥର ଭଗ୍ନ ସ୍ୱାସ୍ଥ୍ୟ ଆହୁରି । ବର୍ତ୍ତମାନ ଯେଉଁଭଳି କାଳ ପଡ଼ିଛି, ସେଥିରେ ଭିକ୍ଷା ମିଳିବା ତ ଦୂରର କଥା, ମୂଲିଆଙ୍କୁ ମୂଲ ମିଳିବା କାଠିକର ପାଠ ।

ଲୋକନାଥ କେତେ ଦିନ ମାଣ୍ଡିଆ ଓ ବାଜିଣ ଧାନରେ କୌଣସି ମତେ ଅନଶନ ଉପବାସରୁ ରକ୍ଷା ପାଇବାକୁ ଚଳାଇ ଆସିଲା । ଏଣିକି ତାକୁ ସବୁଆଡ଼େ ଶୂନ୍ୟ ଦିଶିଲାଣି । ସେ କ ଲୋକଙ୍କର ଏ ଜାଗରଣରେ ସ୍ୱାର୍ଥପରର ବୈଷ୍ଣବର ତାମସୀ ସ୍ୱପ୍ନ ଦେଖି ପାରୁଛି । ନିଜେ ଅନାହାରରେ ମରିବ, ଏଥିପାଇଁ ତାହାର ଅଳପ ଭୃକ୍ଷେପ ନାହିଁ, କିନ୍ତୁ ତାହାର ଆଖି ଆଗରେ ତାହାର ସ୍ତ୍ରୀ ପୁଅ ଜଠରାନଳରେ ଦେଖିବ, ଏହି କଥା ଭାବିଲା ବେଳକୁ ତାହାର ହୃତ୍‌ପିଣ୍ଡ ଛିନ୍ନ ହୋଇ ଯାଉଛି । ସେମାନଙ୍କର କାତର ଦୃଷ୍ଟି ଦେଖି ତାହାର କ୍ଷତ ହୃଦୟରେ ଦେହରୁ ଅର୍ଦ୍ଧେକ ରକ୍ତ ଶୁଖି ଯାଉଛି । ପ୍ରଭୁ କଣ ଏହି ଅନାଥଗୁଡ଼ିକଙ୍କ ଆଡ଼କୁ ଟିକଏ ଫେରି ଚାହିଁବେ ନାହିଁ ?

ସେ ବର୍ଷ ଗଭର୍ଣ୍ଣମେଣ୍ଟ ଦୁର୍ଭିକ୍ଷପୀଡ଼ିତ ଲୋକମାନଙ୍କୁ କାର୍ଯ୍ୟ ଯୋଗାଇବା ଲାଗି ପୋଖରୀରେ ଆଞ୍ଚଳିକ କାମ ଆରମ୍ଭ କଲେ । ସେଠାରେ କୁଲି ମୂଲିଆ ଶ୍ରେଣୀର ଲୋକମାନେ ମୂଲ ଲାଗି

ଦୁର୍ଭିକ୍ଷର କରାଳତା ଜେଠେଇ ପରିବାରଙ୍କର ସମ୍ମାନ ଗଲେ
ଲୋକନାଥ ପୁତ୍ରକନ୍ୟାମାନଙ୍କର କରୁଣ ଚିତ୍କାର ଶୁଣି ଆଉ ଥ
ହୋଇ ପାରିଲା ନାହିଁ । ଭାବିଲା, ଯେ ଯାହା କହିଲେ କହୁ, ମୁଁ
ଆଉ ଏମାନଙ୍କର ଦାରୁଣ ଯନ୍ତ୍ରଣା ସହ୍ୟ କରି ପାରିବି ନାହିଁ
ମରିବା ଆଗରୁ ଥରେ ପାରୁପର୍ଯ୍ୟନ୍ତ ଚେଷ୍ଟା କରି ଦେଖେଁ, ସେମାନଙ୍କୁ
କିଛି ଦିନ ସମ୍ଭାଳି ନେଇପାରିବି କି ନା । ଭଗବାନ ଏ ଅଧ
ଉପରେ ଏତେ ରୁଷ୍ଟ କାହିଁକି ହେଲେ ? ହେଲେ ତ, ମୁଠାଏ
ଅନ୍ନର ବ୍ୟବସ୍ଥା କଲେ ନାହିଁ କାହିଁକି ? ବଞ୍ଚିବାକୁ କ'ଣ
ଆମ୍ଭମାନଙ୍କର ଅଧିକାର ନାହିଁ ? ହେଉ ତୁମ ଇଚ୍ଛା ! ଲୋକନାଥ
ଜାତିର ଅଭିମାନ, ସମାଜର ତାଡ଼ନା ସବୁ ଭୁଲି କରି ଦେଇ
ଶେଷରେ ଗୋପନରେ ପାଣି ମୁଣ୍ଡଆ କାମ ଆରମ୍ଭ କଲା । ଜନ୍ମ
ଜାତିର ଚିହ୍ନ, ପବିତ୍ରର ଧ୍ୱଜା ଯଜ୍ଞସୂତ୍ର ମଇଳାଖଣ୍ଡି ଅଣ୍ଟାରେ
ଗୁଡ଼ାଇ ଦେଇ ପରମ ଉତ୍ସାହରେ କାର୍ଯ୍ୟରେ ତାହାର ମନ ପ୍ରାଣ
ଢାଳି ଦେଲା । ଲୋକନାଥର ଦେହରେ ବଳ ଥିଲା । ସେ
ଠିକା କାମରେ କଠିନ ପରିଶ୍ରମ କରି କେଉଁ ଦିନ କେଇଅଣା
କେଉଁ ଦିନ ଦୁଇଅଣା ରୋଜଗାର କରି ଦୁର୍ଭିକ୍ଷର ପ୍ରବଳ ତୋଡ଼ରୁ
କୌଣସି ପ୍ରକାରେ ସମ୍ଭାଳି ଗଲା । ସେ ପଥରବୁହା କାମ କରେ
ପ୍ରଥମରେ କ୍ଷୁଦ୍ର ପଥର ସେ ଏକା ବୋହୁଥିଲା । ପରେ ବଡ଼ ପଥର
ବୋହିବାକୁ ପଡ଼ିବାରୁ ଜଣକଦ୍ୱାରା ସେଉଟା ଅସମ୍ଭବ ହୋଇ
ପଡ଼ିଲା । ଶେଷରେ ସେ ଗତ୍ୟନ୍ତର ନ ଦେଖି ଜଣେ ଗାଁର ପଣ୍ଡିଆ
ବାଭନକୁ ସଙ୍ଗୀ କରି ଉଭୟ ମିଳି ସାଙ୍ଗରେ ପଥର ବୋହିବାକୁ
ଲାଗିଲେ । ପ୍ରଥମେ ପଣ୍ଡିଆ ବ୍ରାହ୍ମଣ ପାଖେ ପଥର ବୋହିବାକୁ

ଯନ୍ତ୍ରଣା ।

ଜୀବନରେ ମଙ୍ଗଳ ନ ଥିଲା, କିନ୍ତୁ ଲୋକନାଥର ବାରମ୍ବାର ଅନୁରୋଧରେ ଶେଷରେ ସେ ରାଜି ହେଲା ।

ମାନ୍ୟବର ( କଣ୍ଟ୍ରାକ୍ଟର ) ବାବୁ ଲୋକନାଥର ଆଚାର-ବ୍ୟବହାର, କଥାବାର୍ତ୍ତା, ସ୍ୱଚ୍ଛ ମନରେ ଟିକିଏ ବହଳିଲେ ଦେଖି ମନେ ତା'ର ପରିଚୟ ପଚାରିଲେ । ସେ କହିଲା, "ମୁଁ ଅନାଥ ତ ମୁଁ ଅନାଥ, ତାର ଆଉ ଅଧିକ ପରିଚୟ କଣ ଦେବା ?" ଏପରି ଚଳାଚଳ କରିବାକୁ ଶେଷରେ ସେ ତାହାର ଜୀବନର କରୁଣ-କାହାଣୀ ତାଙ୍କ ଆଗରେ କହିଗଲା । ତା କଥା ଶୁଣି ବାବୁ ଦୟାଭାବରେ ଆଖି ଲୋତକ ଭରି କହିଲେ, "ବଡ଼ କୁଳରେ ଜନ୍ମ ହୋଇ ତୁମେ ବହୁତ କଷ୍ଟ ପାଇଲଣି । କେବଳ ଧର୍ମ ତୁମ ଆଗରେ । ଭଗବାନ ନିଶ୍ଚୟ ଦିନେ ତୁମର ଦୁଃଖ ମୋଚନ କରିବେ ।" ଅନ୍ୟାନ୍ୟ କଥାବାର୍ତ୍ତା-ପରେ କଣ୍ଟ୍ରାକ୍ଟର ବାବୁ ତାକୁ କହିଲେ, "ମୁଁ କେତେ ଦିନ ହେଲା ଗୋଟିଏ ପୂଜାରୀ ଖୋଜି ବୁଲୁଛି, ମିଳୁ ନାହିଁ । ତୁମେ ଆଜି ଏ କାମ କରିବ କି ? ତୁମ ଆମ ଦୋକାନରେ ରହି ମୋତେ ମାସ ଏ ସମ୍ପର୍କରେ ଜଣା ଦେବ ।" ଲୋକନାଥ ଟିକିଏ ନୀରବ ହୋଇ ନରମ କମ୍ପିତ ସ୍ୱରରେ କହିଲା, "ଆପଣ ମୋ ପ୍ରତି ଯେଉଁ ଦୟା ଦେଖାଉଛନ୍ତି, ମୁଁ କାହିଁକି ତାହା ଭୁଲିବି ? କିନ୍ତୁ ମୁଁ ତ କେବେ ଦେବସେବା କାମ କରି ନାହିଁ ।" ବାବୁ କହିଲେ, "ସେଥିଲାଗି ଚିନ୍ତା ନାହିଁ, ଏଇଟା ତ ଘର କଥା କାମ ନୁହେଁ, ଦିନାକେତେ କରିଗଲେ ହୋଇଯିବ ସେ ।"

ଲୋକନାଥ ଉପରେ ଭାଗ୍ୟର ଶୁଭଦୃଷ୍ଟି ପଡ଼ିଲା । ସେ କଣ୍ଟ୍ରାକ୍ଟର ବାବୁଙ୍କ ଦୋକାନରେ ଥାଏ ଓ ସେଠାରେ ଖାଏ ।

ବାବୁଙ୍କଠାରୁ ଟଙ୍କା ଆଣିବା, ଜିନିଷ ପତ୍ର ଆଣିବା କିମ୍ବା ଚିଠି, ସବୁ ଡାକଘରକୁ ପଠାଇ ଦିଏ । ତାଙ୍କର ପିଲାଟିମାନଙ୍କୁ ଶିଖାଇ ଦେଇ ଏକମ ଦ'ଟେଇପା ମଧ୍ୟ ମନ୍ଦୁମୁ କରି ପାଇଲା । ଲୋକନାଥର ସାଧୁତା ଓ ଉଦାର ସ୍ୱଭାବରେ ମୁଗ୍ଧ ହୋଇ କଣ୍ଟ୍ରାକ୍ଟର ବାବୁ ତାଙ୍କୁ ପରପୁଅ ବୋଲି ଜ୍ଞାନ କରନ୍ତି ନାହିଁ । ବାବୁ ଖରଚପତ୍ର, ହିସାବ ଇତ୍ୟାଦି ସବୁ ତା ହାତରେ ସମର୍ପି ଦେଇ ନିଶ୍ଚିନ୍ତ ଥାନ୍ତି ।

ଉଦାରପ୍ରାଣ ଲୋକନାଥ ବାବୁ ଚତୁର ଲୋକନାଥର ବିଚକ୍ଷଣ ବୁଦ୍ଧିର ସଦ୍‌ବ୍ୟବହାର କରିବା ଲାଗି ତାକୁ ଏଣିକି ନିର୍ବାଚନରେ ମୂଳଆଙ୍କ ନାମ ଟାଣିବାକୁ 'ଷ୍ଟୋର୍ସ-ସର୍କାର' କାମରେ ନିଯୁକ୍ତ କଲେ । ତାହା ଛଡ଼ା ତାଙ୍କ ମୁନାଫାରୁ ମଧ୍ୟ ତାକୁ କିଛି ଭାଗ ଦିଅନ୍ତି । କିଛିଦିନ ପରେ କଣ୍ଟ୍ରାକ୍ଟର ବାବୁ ଲୋକନାଥର ଦରମା ଟଙ୍କା ଓ ନିଜ ହାତରୁ କିଛି ଦେଇ ମାର୍କେଟରେ ତା ପାଇଁ ଖଣ୍ଡେ ଭଲ ଘର ତିଆରି କରାଇଦେଲେ । ଲୋକନାଥର ବଡ଼ ପୁଅଟି ମଧ୍ୟ ଆସି କଟକ ନଗରରେ ରହି ଇଂରାଜୀ ପଢ଼ା ଆରମ୍ଭ କଲା । ପରେ ଲୋକନାଥର ଅଦ୍ଭୁତ କାର୍ଯ୍ୟକୁଶଳତାରେ ସନ୍ତୁଷ୍ଟ ହୋଇ ବାବୁ ତାକୁ ପେଟି କଣ୍ଟ୍ରାକ୍ଟର କରାଇ ଦେଲେ । ଲୋକନାଥ କ୍ରମେ ଏପରି ଅନୁଗ୍ରହର ଋଣଭାରରେ ନଇଁ ପଡ଼ିଲା । ସେ ସଦାବେଳେ ସୁଯୋଗ ଖୋଜୁଥାଏ, କିପରି ମୁଁ ବାବୁଙ୍କୁ ଦେଖାଇ ଦେବି ଯେ, ମୋ ପ୍ରାଣଟା ଅକୃତଜ୍ଞ ନୁହେଁ । ପ୍ରାଣ-ଦେଇ ସୁଦ୍ଧା ଯଦି କେଣେ ଏପରି ମୁନିବର କିଛି ହେଲେ ଉପକାର କରି ପାରିବ ନାହିଁ ?

( ୫ )

ବୃଦ୍ଧ ତର୍କାଳଙ୍କାରେ କେତେ ଜୀବନରେ ପୁତ୍ରର ନିଷ୍ଠୁର ବ୍ୟବହାରରେ ମର୍ମାହତ ହୋଇ ଅନେକ ଦିନ କାଳଗ୍ରାସରେ ପଡ଼ି ସାରିଲେଣି । ଜନବନ୍ଧୁ ବର୍ତ୍ତମାନ ଯୌବନ ଓ ବାର୍ଦ୍ଧକ୍ୟର ସନ୍ଧି-ସ୍ଥଳରେ । ପୁତ୍ରାଦି କିଛି ନ ହେବାରୁ ସେ ଦ୍ୱିତୀୟ ଦାରପରିଗ୍ରହ କରିଥିଲେ, କିନ୍ତୁ ସେଥିରେ ମଧ୍ୟ କିଛି ଫଳ ହେଲା ନାହିଁ । ଶେଷରେ ମହାପ୍ରାନ୍ତର ନ ହେବାରୁ ଗୋଟିଏ ପୋଷ୍ୟ ପୁତ୍ରର ଅନୁସନ୍ଧାନରେ ଲାଗିଲେ । ଅନେକ ଚେଷ୍ଟା କଲେ, ଲୋକେ ଲୋକଙ୍କୁ କେତେ ଅନୁରୋଧ କଲେ, କିନ୍ତୁ କେହି ତା କଥାରେ କର୍ଣ୍ଣପାତ କଲେ ନାହିଁ । ସମସ୍ତଙ୍କ ମନରେ ସେହି ଏକ ଭାବ—"ଆହା ହା ! ମା ବାପର ସେହି ଉଜ୍ଜ୍ୱଳ ଜ୍ୟୋତିଷ୍ମା ଅଛି ନା ! ଯାଙ୍କ ବାପେ ଗୋଟିଏ ଏତେ ବଡ଼ ସନ୍ତୁଆ ପିଲାକୁ ଦାଣ୍ଡର ଭିକାରି କରି ଦେଇଥିଲେ ଠିକ ! ସେହି ବାପର ପୁଅ ନା, ଆଜି କୁଆଡ଼ୁ ଆସିବ ? ଜାଣିଶୁଣି କିଏ ନିଜର ପୁଅକୁ ଅକାଳରେ ଭସାଇଦେବ ?" ଜନବନ୍ଧୁ ସବୁଠାରୁ ନୈରାଶ୍ୟର ବାଣୀ ଶୁଣି ଚତୁର୍ଦ୍ଦିଗ ଅନ୍ଧକାର ଦେଖିଲେ । ସମାଜ କଣ ଏପରି ଭାବରେ ପ୍ରତିଶୋଧ ନିଏ ? ସେ କଣ ଲୋକର ଦୁଃଖ ଦୁର୍ଦ୍ଦଶା ପ୍ରତି ଟିକିଏ ଆଡ଼ଦୃଷ୍ଟିରେ ଦୃଷ୍ଟା ବୁଝେ ନାହିଁ ?

ବାହାରର ଅନ୍ଧକାର ଘନତର ହେବା ସଙ୍ଗେ ସଙ୍ଗେ ଭିତରର ସମାଜ ଆବରଣ ସ୍ତରସ୍ତ ସ୍ତରସ୍ତ ହୋଇ ଫିଟିବାକୁ ଆରମ୍ଭ କଲା । ଅନ୍ତରର ସେହି ଆଲୋକରେ ଜନବନ୍ଧୁ ସବୁକଥା ଟିକିଏ ସ୍ପଷ୍ଟ କରି ଦେଖି ପାରିଲେ । ସେ ଭାବିଲେ, ଏତେ ଦିନେ ଲୋକନାଥର ଘର

ନିଃସ୍ୱାର୍ଥ ମଣିଷ ଅସ୍ୱୀକାର କରି ତାଙ୍କୁ ତ୍ୟାଗ କରିବାକୁ ଉଦ୍ୟତ । ଲୋକନାଥଙ୍କ ତର୍କାଳଙ୍କାର କି ଅନ୍ୟାୟର ନ କରିଛନ୍ତି ? ଯେଉଁ ପିତା ମାତାର ଶେଷ ବଚନ ରଖିଥିଲେ, ମୃତ ବନ୍ଧୁପତ୍ନୀର ଗାତ୍ର ସଞ୍ଜୀବନ ରଖିଛନ୍ତି । ତର୍କାଳଙ୍କାରଙ୍କ ପକ୍ଷରେ ଅନୁଚିତ ଜାଣି ଯେତେ ଥର ଲୋକନାଥଙ୍କୁ ଫେରାଇ ଆଣିବାକୁ ଚାହିଁଥିଲେ, ତାର ପୈତୃକ ସମ୍ପତ୍ତି ତାଙ୍କୁ ପ୍ରତ୍ୟର୍ପଣ କରିବାକୁ ଉଦ୍ୟତ ହୋଇଥିଲେ, କିନ୍ତୁ ଘନବନ୍ଧୁର ଶଠ ପ୍ରବଞ୍ଚନାରେ ସବୁ ବ୍ୟର୍ଥ ହୋଇଯାଇଛି । ଲୋକନାଥଙ୍କ ଦୁଃଖ ସମୟରେ ଯେ ଦେବନାଥର ତାଙ୍କୁ ଧିକ୍କାର ନ କରିଛି ? ଏ ସମସ୍ତ କଥା ଗୋଟି ଗୋଟି ହୋଇ ବର୍ତ୍ତମାନ ଘନବନ୍ଧୁ ମନରେ ଜାଗି ଉଠିଲା । ଲୋକନାଥ ଜଣେ ପ୍ରଧାନ ଜମିଦାରଙ୍କର ହୋଇ ପ୍ରଚୁର ସମ୍ପତ୍ତିର ଅଧିକାରୀ ହୋଇଅଛନ୍ତି; ତାଙ୍କ ଜ୍ୟେଷ୍ଠପୁତ୍ର ନୀଳମଣି ପଢ଼ାଶୁଣା କରି ଗୋଟିଏ ବଡ଼ ସରକାରୀ ଚାକିରି ପାଇଛି; ସାନପୁଅ କୁଳମଣି ମଧ୍ୟ ଓକିଲି ପଢ଼ା କରୁଅଛି; ବର୍ତ୍ତମାନ ଲୋକନାଥ ଠାରୁ ବଳି ଆଉ ଭାଗ୍ୟବାନ୍ କିଏ ? ସେ କଣ ସତେ ଆଉ ଦୋଷ କ୍ଷମା କରିବ ? ଲୋକନାଥ କଣ ସତେ ଅନୁତପ୍ତର ଅନ୍ତର୍ଦାହ ବୁଝି ପାରିବ ?

ଘନବନ୍ଧୁ ଆଜି ଅସ୍ଥିର ହୋଇ ଯନ୍ତ୍ରଣାରେ ଭାଙ୍ଗି । ନାନା ଭାବନା ଚିନ୍ତା ପରେ ଯେବେ ଲୋକନାଥ ନିକଟକୁ ଯାଇ ତାଙ୍କ ପାଦ ଧରି "ମୋର ସବୁ ଦୋଷ କ୍ଷମା କର" କହି କାନ୍ଦି ପକାଇଲେ । ଭାବପ୍ରବଣ ଲୋକନାଥ ଘନବନ୍ଧୁଙ୍କୁ ବକ୍ଷକୁ ଟାଣିଆଣି ଗାଢ଼ ଆଲିଙ୍ଗନରେ ଆବଦ୍ଧ କରିପକାଇଲେ । ଘନବନ୍ଧୁ କେତେ କଥା କହିବ

ବୋଲି ଭାବିଥିଲି, କିନ୍ତୁ କିଛି ପାରିଲି ନାହିଁ । ଭାବର ପ୍ଳାବନରେ ତାହାର କଣ୍ଠରୋଧ ହୋଇ ଆସିଲା । ସ୍ପନ୍ଦନର ବେଗ ସମ୍ଭାଳି ନ ପାରି ସେ ଭେ ଭେ ରଡ଼ି ଛାଡ଼ିଲା । ଲୋକନାଥର ଚକ୍ଷୁ ଥର ଥର ହୋଇ ଉଠିଲା । ସେ ଆତ୍ମସମ୍ବରଣ କରି କହିଲା, "ପାଗଳି ! ଭୁଲିଛି ମୋତେ ! ଆଉ କାନ୍ଦନା, ଯାହା ହେବାର ହୋଇ ଯାଇଛି, ଆଜି ସେ କଥା ଭାବି କଣ ହେବ ? ଈଶ୍ୱର ବିଡ଼ମ୍ବନା ହେତୁ ଏତେ ଦିନଯାଏ ଆମେ ଅଲଗା ଅଲଗା ହୋଇ ରହିଥିଲେଁ । ପ୍ରଭୁଙ୍କ ଇଚ୍ଛାରୁ ଆଜି ସବୁ ଦୁଃଖ ଯାତନା ଦୂର ହୋଇଅଛି । ଶୁଣ ! ଆଜି କି ସୁଖର ଦିନ ! ଏ ଦୀର୍ଘ ବିଚ୍ଛେଦ ନ ହୋଇଥିଲେ ବୋଧହୁଏ ଆଜି ମିଳନର ଏପରି ଅପୂର୍ବ ସୁଖ ମିଳି ନ ଥାନ୍ତା । ମନରେ କଳ୍ପନା କରି ମୁଁ ତୋତେ ଏପରି ଆଲିଙ୍ଗନ କରି ପାରି ନ ଥାନ୍ତି । ମନୁଷ୍ୟ ଆଖିରେ ବେଳେ ବେଳେ ଲୋତକ ଲାଗି ତାକୁ ଟିକିଏ ବାଷ୍ପଭରା ଓ ଜଳଜଳ ଦିଶାଏ, କିନ୍ତୁ ସେ ଟିକକ ଯୋଗୁଁ ନହୋଇଥିଲେ ସେହିଁଠାକୁ ସେଇଟା । ଉଚ୍ଚ ହାସ୍ୟରେ ପଡ଼ିଗଲେ ତାହାର ଉଚ୍ଛ୍ୱାସ କଣ ଲୁଚିଯାଏ ? କେବଳ ଦୃଷ୍ଟିରେ ଟିକିଏ ଲଜ୍ଜିତ ଦେଖାଏ ମାତ୍ର । ଛାଡ଼ ସେ କଥା, ଆଜିଠାରୁ କୁଳମଣି ତୋର । ମୋର ଆଜି ତା' ଉପରେ କିଛି ଦାବି ନାହିଁ ।"

ଲୋକନାଥର ଜନ୍ମିତ ପୁତ୍ର କୁଳମଣି ତର୍କାଳଙ୍କାରଙ୍କ କୁଳ ମଣ୍ଡନ କଲା । ଉଭୟ ପରିବାରର ବହୁ ଦିନର ବ୍ୟବଧାନ ଉପରେ ଗୋଟିଏ ସେତୁ ନିର୍ମିତ ହୋଇଗଲା ।

---

# ଲଛମନ ଜି

“ଖାଇ ପିଇ ଦିନରେ ଥରେ କଲେଜକୁ ଗଲେ ତମର କାମ ଛୁଟି । ମୁଁ ଏଣେ ଏକେଲା ଦଡ଼ବଡ଼ା ହୋଇ ମରୁଥାଏଁ । ତମର ବା ଏତେ ଭାବନା ଚିନ୍ତା କଅଁ ? ଉପରେ ପଡ଼ିଲେ ଦିନା ଯାଇଲା ?”

ବଳରାମ ବାବୁ ସ୍ତ୍ରୀଙ୍କ କଥା ଶୁଣି ମୁହଁରୁ ଗୁଡ଼ାଖୁ ନଳଟା ଟିକଏ କାଢ଼ିଦେଇ କହିଲେ, “କଣ, କଥା କଣ ?”

“ନାହିଁ, କିଛି ନାହିଁ ! ତମେ ତ ଦିନ କି ରାତି ବହି ଖଣ୍ଡେ ଧରି ଆରାମ ଚୌକିରେ ପଡ଼ି ଭଡ଼ ଭଡ଼ କରି ଗୁଡ଼ାଖୁ ଟାଣୁଥାଅ, ଏସବୁ ଛୋଟ କଥାରେ ତମର ଲୋଡ଼ା କଅଣ ଥାଏ ? ଘରେ କଣ ହେଲା, କଣ ନ ହେଲା, ଏଥିରେ ତମର ଯାଏ ଆସେ କେତେ ?”

ବଳରାମ ବାବୁ ଈଷତ୍ ହାସ୍ୟ କରି କହିଲେ, “କୋଉଠାଏ ଲମ୍ବ ମୁଖବନ୍ଧ ନ ଦେଇ କଥାଟାଏ କହିବାକୁ ସ୍ତ୍ରୀଜାତିରୁ ଶାସ୍ତ୍ରରେ ମନା ଅଛି ନା କଣ ? ଏଇଟା କେଉଁ ଋଷିଙ୍କ ଉପଦେଶ ?”

“ହଁ, ସେଥିର ଦୋଷ ସବୁ ତ ସେଇଥି ମାରିଛି ଜାଣିର ଧ୍ରୁବପକୁ ଗଢ଼ିଯାଉ ସେତେକ ମନ୍ତ୍ରୀ ବଳିଲା ତାକୁ କେଇ ସେ

ସ୍ୱାଧୀନା ନାରୀଟିଏ ସ୍ତ୍ରୀ ଗଢ଼ିଦେଲା ଯେ, ସେ ଚିରକାଳ ପୁରୁଷର ଦାସୀ ହୋଇ ରହିବ । ଆଉ ଜୀବନର ଯେତେ ଦୁଃଖ କଷ୍ଟ, ଗାଳି ଅପମାନ, ଲାଞ୍ଛନା ଅପବାଦ ସବୁ ନିଜର ଭାଗ ବୋଲି ମୁଣ୍ଡ ପାତି ନେବ । ଆଖି ପାଣି ଗୋଡ଼ରେ ମାଡ଼ି ସେ ଦଶମାସ କାଳ ପିଲାକୁ ପେଟରେ ଧରିବ, ପୁଣି ପିଲାର ଭଲ ମନ୍ଦରେ ପଦେ ପାଟି ଫିଟାଇଲେ ତାର ଆଉ ରକ୍ଷା ନାହିଁ । କଏ, ତେବେ ବାହାଦୁର କହିଲେ ହଉ, ନ କହିଲେ ନାହିଁ, ମୋର ସପକ୍ଷରେ କିଏ ଅଛି ? ଘରେ ଯୁବା ସ୍ତ୍ରୀଟିକୁ ରଖି ବୁଢ଼ୀ କଲ ବୋଲି ମନେ ତ ଆଉ କେହି କଥା କହିବେ ନାହିଁ । କେତେବେ ମା ମନ ବୁଝି ପାରେ ନାହିଁ ବୋଲି ଉଚିତ କହୁଛନ୍ତି । ଏଣିକି —"

"ବାବାରେ ! ମାଇପର ଝଗଡ଼ାର କଥା କହୁଛ ?"
"ନ ହେଲେ ଆଉ କଣ ତମର ଦୁହାଁକୁ କଣ କଥା ?"
"କାହିଁକି ? ହେଲେ ବା ମଝି ଘର ପୁଅନା ? ମୁଁ ତ ଆଉ ଘେତର ଝାଳୁଆ ବୁଢ଼ା ହୋଇ ଯାଇ ନାହିଁ ? ତେବେ କଣ କହୁଛ ! ଆଉ ମଧ ବସୁଥ ଘରର ମନର ସମର୍ଥ କଣ ?"

ବଳରାମ ବାବୁଙ୍କ ସ୍ତ୍ରୀ ଗୋବିନ ରସିକତା ଉପଭୋଗ ବା ଉପଭୋଗ କରିବାର ମିଜାଜରେ ନ ଥିଲେ, ଏଣୁ ସେ "ଯା ମଁ ! ତମ ଇଚ୍ଛା ଯାହା କର, ମୁଁ ଆଜି ଏଥିରେ ପାଟି ଫିଟାଇବି ନାହିଁ" କହି ମୁହଁ ବୁଲାଇ ଘରର ଭିତର ସେଠାରୁ ଚାଲିଗଲେ ।

ବଳରାମ ବାବୁ ବାହାରେ ଏତେ ଔଦାର୍ଯ୍ୟ ଦେଖାଇଲେ ମଧ୍ୟ ସେ ଦିନ ଅନ୍ଧ ରାତି ହୋଇ ଶୋଇ ପାରିଲେ ନାହିଁ । ପୁଅ

ଧନ୍ସ୍ତ୍ରବା ]

ବଳରାମବାବୁ ଷ୍ଟେସନର ଏ ରମଣୀୟ ଦୃଶ୍ୟ ଦେଖି ଦେଖି ଏକାଗ୍ର ମନରେ ନାନାକଳ୍ପନାର ପରିକ୍ରମଣ କରୁଥିଲେ; ଏପରି ଅପରିଚିତ ସ୍ଥଳରେ ହଠାତ୍ ଓଡ଼ିଆ କଥା ଶୁଣି ସେ ଚକିତଭାବରେ ତୁନ୍ନା ହୋଇ ରହିଲେ । ଆହା ! କି ମଧୁର ସ୍ୱର ! କି ପ୍ରାଣସ୍ପର୍ଶୀ ସେ ଭାଷା ! ସେ ମନେ କଲେ, କାହିଁ ? ଆଜଯାଏ ତ ମୋର ମାତୃଭାଷା ମନେ ଏପରି ଜରୁଢ଼ ଶ୍ରବଣରମ୍ୟ ହୋଇ ନ ଥିଲା ! ସେ ଯେ ମୋର ହୃଦୟର ମାନ୍ୟକ ତାର ସନ୍ଧାନ ଏପରି ଅନାସ୍ଥ ଭାବରେ ବନ୍ଧା, ମୁଁ ତ କାହିଁ ଜାଣି ନ ଥିଲି ! ଧନ୍ୟ ରେ ସ୍ୱଦେଶ ! ତୁ ପୁଣି ଆପଣା ଜନପଦକୁ ଏତେ ଆପଣାର କରିଦେଉ ? ପଦେ କଥାରେ ଏତେ ଶକ୍ତି ! କେଉଁ ଉଚ୍ଚାରଣରେ ଏତେ ମାଧୁରୀ ଅଛି ? କେଉଁ ପଙ୍କ୍ତିରେ ଏତେ ମୋହ ଅଛି ? କେଉଁ ଭାଷାରେ ଏତେ ମାଦକତା ଅଛି ?

ବଳରାମ ବାବୁ ପଛକୁ ବୁଲି ଦେଖିଲେ ମୂଲିଆ ଶ୍ରେଣୀର ଗୋଟିଏ ଲୋକ ଜଣେ ଭଦ୍ରଲୋକଙ୍କ ସଙ୍ଗେ କଥାଭାଷା ହେଉଛି । ଭଦ୍ରଲୋକଟି ମଧ୍ୟ ତା ସଙ୍ଗେ ଓଡ଼ିଆରେ କଥାବାର୍ତ୍ତା କରୁଅଛନ୍ତି । ବେଶଭୂଷା ଚାଲିଚଳନ ଦେଖି ତ ଏ ଭଦ୍ରଲୋକଟିଙ୍କୁ ଓଡ଼ିଶାର ଲୋକ ବୋଲି ବୋଧ ହେଉନାହିଁ, ଅଥଚ ଏପରି ଶୁଦ୍ଧ ଓଡ଼ିଆ କହୁଅଛନ୍ତି କିପରି ? ଦେଖାଯାଉ, ଥରେ ପଚାରି ବୁଝିଲେ କ୍ଷତି କଣ ?

"ଆପଣଙ୍କ ନିବାସ କଣ ଓଡ଼ିଶାରେ ?"

ଭଦ୍ରଲୋକ—"ଆଜ୍ଞା ! ଆପଣଙ୍କ ଅନୁମାନ ଠିକ୍ । ମୋ ଘର ଓଡ଼ିଶାରେ, ଆପଣଙ୍କ ନିବାସ ?"

ବ—"ସେହି ପାଠଶାଳାରେ, ଆପଣ ଏଠାରେ କଣ କାର୍ଯ୍ୟ କରନ୍ତି ?"

ଲ—"ଆଜ୍ଞା, ମୁଁ ଏଠାରେ ସବ୍‌ଡେପୁଟି କାର୍ଯ୍ୟ କରେ ।"

ବ—"ଆପଣ ଏଠାରେ କେତେ ବର୍ଷ ହେଲା କାର୍ଯ୍ୟ କଲେଣି ?"

ଲ—"ନା, ମୁଁ ଏହି ବର୍ଷ ସେ କାର୍ଯ୍ୟରେ ନିଯୁକ୍ତ ହୋଇ ଏଠାରେ ପ୍ରୋବେଶନର ରୂପେ କାର୍ଯ୍ୟ କରୁଅଛି । ମାତ୍ର, ପାଟଣାରେ ଆସି ରହିବାର ଅନେକ ବର୍ଷ ହୋଇଗଲାଣି ।"

ବ—"ତାହାହେଲେ ଏହା ପୂର୍ବରୁ ଆପଣ ଏଠାରେ କଣ କରୁଥିଲେ ?"

ଲ—"ମୋର ପିତା ଏଠାରେ ଓକିଲାତି କରୁଥିବା ସମୟରେ ମୁଁ ତାଙ୍କ ପାଖରେ ରହି ପଢ଼ାଶୁଣା କରୁଥିଲି । ତାଙ୍କର କାଳ ହେବା ପରେ ମଧ୍ୟ ମାତା ଭ୍ରାତାଙ୍କୁ ଘରେ ଛାଡ଼ିଦେଇ ଆମ୍ଭ ପିତାଙ୍କର ତ୍ୟକ୍ତ କେତେକ ସମ୍ପତ୍ତି ବାଡ଼ି ଇତ୍ୟାଦି ବୁଝାସୁଝା କରିବା ଲାଗି ମୋତେ ଏଠାରେ ରହିବାକୁ ହେଲା । ସେହି ଦିନଠାରୁ ମୁଁ ଏଠାରେ ରହି ଏଠାର କଲେଜରୁ ବି. ଏ. ପାସ କଲି ଏବଂ ତା'ପରେ ଏ ଚାକିରିଖଣ୍ଡ ହେବାରୁ ଏ ପର୍ଯ୍ୟନ୍ତ ରହିବାକୁ ହେଉଅଛି ।"

ବ—"ଆପଣଙ୍କ ପିତାଙ୍କ ନାମ କ'ଣ ?

ଲ—"ଗୋପୀନାଥ ଦାସ ।"

ବ—"ଏଁ, ଆପଣଙ୍କ ଘର ଓଡ଼ିଶାର କେଉଁ ସ୍ଥାନରେ କହିଲେ ?"

ଧୃଷ୍ଟତା ।

ଲ—"ଆମ ଘର କଟକଜିଲ୍ଲା କଲ୍ୟାଣପୁର ।"

ବଳରାମ ବାବୁ ଉଚ୍ଚସ୍ୱରରେ କହିଲେ, "ତମ ନାମ ଲକ୍ଷ୍ମୀଧର ନା ?"

ଲ—"ଆପଣ କିପରି ମୋ ନାମ ଜାଣିଲେ ?"

ବଳରାମ ବାବୁ ଆନନ୍ଦରେ ଉଦ୍‌ଭ୍ରାନ୍ତ ହୋଇ କହିଲେ, "ମୁଁ କିପରି ଜାଣିଲି ! ତୁମ ପିତା ମୋର ଅଗ୍ରଜଙ୍କ ବନ୍ଧୁ ଥିଲେ ପାଠଶାଳାଠାରୁ ଆରମ୍ଭ କରି କଲେଜ ପର୍ଯ୍ୟନ୍ତ ଏକସଙ୍ଗେ ପଢ଼ିବା, ଏକସଙ୍ଗେ ଖେଳିବା ସବୁ କରି ଆସିଥିଲୁ । ସେ ଚାକିରୀ ଆସିବା ଦିନଠାରୁ ଆମର ଆଉ କୌଣସି ଚିଠିପତ୍ରର ଆଦାନ ପ୍ରଦାନ ନ ଥିଲା । ତମର ଭାଇ ମନେ ନାହିଁ ? ନା, ସେତେବେଳକୁ ନିତାନ୍ତ ପିଲା, ତୁମ ଆଉ ମନେ ଥିବ ? ମୁଁ ତମକୁ କେତେ ଥର କାନ୍ଧରେ ବୋହି ନେଇ କହିଛି, ସେତେବେଳେ ଆମ ଘର ଆଗ ରାସ୍ତା ପାଖ ବୋହୁ ଦେଖିଛ ।"

ଲକ୍ଷ୍ମୀଧର ଟିକିଏ ଇତସ୍ତତଃ ହୋଇ କହିଲେ, "ଆଜ୍ଞା ! ମୁଁ ଏ ପର୍ଯ୍ୟନ୍ତ ଯୁକ୍ତା ହଲ କରି ଚିହ୍ନି ପାରିଲି ନାହିଁ ।"

ବ—"କଲ୍ୟାଣପୁର ନିକଟରେ ସାତପଡ଼ା ଗ୍ରାମର ନାମ ଶୁଣିଛ ? ଆମ ଘର ସେଇଠାରେ । ମୋ ନାମ ବଳରାମ ମହାନ୍ତି । ମୁଁ ବର୍ତ୍ତମାନ ରଙ୍ଗପୁରରେ ଥାଏ । ଏଠା କୋର୍ଟରେ ଟିକିଏ କାର୍ଯ୍ୟ ଥିବାରୁ ଆସିଥିଲି ।"

ଲ—"ପିତାଙ୍କ ମୁଖରୁ ଅନେକ ଥର ଆପଣଙ୍କର ନାମ ଶୁଣିଛି । ସାତପଡ଼ାଟା ଆପଣଙ୍କ ଜମିଦାରୀ ନା ?"

ବ—"ହଁ ।"

ଲ—"ଆପଣ ଗସ୍ତାରେ କଣ କରନ୍ତି ?"

ବ—"ମୁଁ ମେଡ଼ିକାଲ ମାଷ୍ଟ୍ର ମୁନସିଫ୍ । ଅଚ୍ଛା, ତେବେ ତ ଏଠାରେ ଅଛ; କେଉଁଠାରେ ତମର ଭଲକା ବାଡ଼ ଜଏ ବୁଝାଶୁଝା କରେ ?"

ଲ—"ଆମ୍ଭ ମାମୁ ସବୁ ବୁଝାବୁଝି କରନ୍ତି । ତାଙ୍କ ଘର ଆମର ଗ୍ରାମରେ । ପିତାଙ୍କ କାଳ ହେବା ପରେ ସେ ଆମ ଘରର ମୁରବି । ସେ ନଥିଲେ ବୋଧହୁଏ ମୋତେ ଅନେକ ଦିନୁଁ ପଢ଼ାପଢ଼ି ବନ୍ଦ କରିବାକୁ ହୋଇଥାନ୍ତା ଏବଂ ମୁଁ ଏଠାରେ ମଧ୍ୟ ରହିପାରି ନ ଥାନ୍ତି ।"

ବ "ତମ ମାମୁ କିଏ ?

ଲ—"ତାଙ୍କ ନାମ ମାଧବଧର ଦାସ । ସେ କଲେକ୍ଟରୀର ହେଡ଼ କ୍ଲର୍କ ।"

ବ - "ଓଃ, ମାଧବଧର ବାବୁ ତମ ମାମୁ, ସେ ତ ଅତି ଭଲ ଲୋକ, ସେ କାହିଁକି ନ କରନ୍ତେ ? ହୁଁ ।" କିଛିକ୍ଷଣ ନୀରବ ରହି ପୁନର୍ବାର କହିଲେ, "ତମ ବିବାହର ଆଉ ହୋଇଗଲାଣି ତ ?"

ଲକ୍ଷ୍ମୀଧର ତଳକୁ ମୁହଁ ପୋତି ଟିକିଏ ସଙ୍କୁଚିତ ଭାବରେ କହିଲେ, "ନା ।"

ବ—"କାହିଁକି, ଏ ପର୍ଯ୍ୟନ୍ତ ହୋଇନାହିଁ ଯେ ?"

ଲ "ମୋର ସେଥିରେ କଣ ଅଛି, ମାମୁ ଯାହା କରିବେ ।"

ଅଉଟେ କିଛିକ୍ଷଣ ନିସ୍ତବ୍ଧ ରହିବା ପରେ ଲକ୍ଷ୍ମୀଧର କହିଲେ "ଆପଣ ଏଠାରେ କେଉଁଠି ଅଛନ୍ତି ?"

ପ୍ରତୀକ୍ଷା ।

ଲ—"ମୁଁ ସୁରେନ୍ଦ୍ରବାବୁଙ୍କ ବସାରେ ଅଛି ।"

ଲକ୍ଷ୍ମୀଧର ଟିକିଏ ଅମାର ଭାବରେ କହିଲେ, "ଭଲ ଆମ ବସାରେ ଆପଣଙ୍କର ଜଣ୍ଡାଏ ଦ୍ରପାଦନପଦା ହୁଅନ୍ତା । ମୁଁ କାଲି ସକାଳେ ଯାଇ…"

ବ—ମୁଁ ତ ଆଜି ୯ଟା ଗାଡ଼ିରେ ଚାଲିଯିବି । ହଉ, ସେଥିରେ କଣ ଅଛି ? ତୁମେ ତ ଆମର ଆପଣାର ଲୋକ । ଏଣିକି ଆସିଲେ ମୁଁ ସିଧେ ତମ ବସାରେ ରହିବି । ଯାହାହେଉ, ତମ ସଙ୍ଗେ କଥାବାର୍ତ୍ତା କରି ମୁଁ ଅତ୍ୟନ୍ତ ଖୁସୀ ହେଲି । ଭଗବାନ ତମର ମଙ୍ଗଳ କରନ୍ତୁ । ହଉ, ତେବେ ତେବେ ଯାଅ, ମୋତେ ଶୀଘ୍ର ଷ୍ଟେସନକୁ ଯିବାକୁ ହେବ ।

ବଳରାମ ବାବୁ ଲକ୍ଷ୍ମୀଧରଠାରୁ ବିଦାୟ ନେଇ ବସାକୁ ଫେରିଲେ ଏବଂ ମନେ ମନେ ଭାବିଲେ, ପିଲାଟି ଦେଖିବାକୁ ଯେପରି ଉଜ୍ଜଳ, ସ୍ୱଭାବଟି ମଧ୍ୟ ସେହିପରି ଶାନ୍ତଶିଷ୍ଟ । ଆମ ମାଳୀ ପାଇଁ ଏହାକୁ କଲେ ତ ବେଶ ହୁଅନ୍ତା । ଅଦୃଷ୍ଟରେ ଥିଲେ ହୋଇପାରେ, କିଏ କହିବ ? ଦେଖାଯାଉ ଭଗବାନଙ୍କର କି ଇଚ୍ଛା !

ବଳରାମ ବାବୁ ସେହି ଦିନ ରାତି ଗାଡ଼ିରେ ଗାଁକୁ ଫେରି ଆସିଲେ ।

( ୨ )

ବଳରାମ ବାବୁଙ୍କ ପତ୍ର ପାଇ ମାଧବାଧର ବାବୁ କହିଲେ, ହେଲେ ବା ମନ୍ଦ କଣ ? ଲକ୍ଷ୍ମୀଧରଙ୍କ ତ ଏବେ ବିବାହର ବୟସ

ହୋଇଗଲା, ଆଉ ଏଣିକି ବଳକୁ ଲଢ଼ିବା ଅନୁଚିତ । ଏହାପାଇଁ ତ ଆଜି ଗୋଟାଏ ଭଲ ବର ମିଳିବ ନାହିଁ । ତାଙ୍କର ଅନେକ ଦିନର ଗୋଟାଏ ଖାନ୍ଦାନ୍ ଘର । ବିଷୟ ଆଶ୍ରୟର ତ କଥା ନାହିଁ, ତା ଉପରା ବଳରାମବାବୁ ନିଜେ ଜଣେ ଦେଶର ଗଣ୍ୟମାନ୍ୟ ବ୍ୟକ୍ତି । ଜନ୍ମାଇ ମଧ୍ୟ ଖୁବ୍ ସୁନ୍ଦର ଏ ତ ମୋର ନିଜର ଦେଖିବା କଥା; ପୁଣି ଶୁଣିଲି ଲେଖାପଢ଼ା ବେଶ ଶିଖିଛି ଓ ଆଉ ସବୁ ବିଷୟରେ ମଧ୍ୟ ଯୋଗ୍ୟ, ବିଶେଷତଃ ଭଲ ଜାତି ବୋଲି ସେମାନଙ୍କର ଅନେକ ଦିନରୁ ଗୋଟାଏ ଅଭିମାନ ଅଛି, ଆମ୍ଭମାନଙ୍କ ସଙ୍ଗେ ବନ୍ଧୁ କରିବାକୁ ସେମାନେ ସେତିକି ଗୋଟାଏ ମର୍ଯ୍ୟାଦାହାନି ବୋଲି ମନେ କରୁଥିଲେ । ହଁ, ଏ ସୁଯୋଗ ଛାଡ଼ିବାର ନୁହେଁ । ବାକି ଲକ୍ଷ୍ମୀଧର କଥା, ସେ ଯେତିକି ଶାନ୍ତ ସୁଶୀଳ, ସେ ଯେ ମୋ କଥାରୁ ବାହାରି ଯିବ ଏପରି ତ ବୋଧ ହେଉ ନାହିଁ । ତେବେ ଆଜି କାଲିକାର ଶିକ୍ଷିତ ବର, ତାର ମତ ଅନୁଯାୟୀ କାର୍ଯ୍ୟ କରିବା ଭଲ । ଏହିପରି ନାନାକଥା ଭାବି ମାୟାଧର ବାବୁ ଲକ୍ଷ୍ମୀଧର ନିକଟକୁ ସେହି ଦିନ ଏ ବିଷୟରେ ଖଣ୍ଡେ ଚିଠି ଲେଖିଲେ ଏବଂ ସେଥିରେ ସମ୍ବନ୍ଧ କରିବା ସେ ସବୁପ୍ରକାରରେ କର୍ତ୍ତବ୍ୟ ଓ ବାଞ୍ଛନୀୟ ଏକଥା ମଧ୍ୟ ଉଲ୍ଲେଖ କଲେ ।

ବଳରାମ ବାବୁଙ୍କୁ ପତ୍ର ଲେଖିବେ, କିଛି ସ୍ଥିର କରି ନପାରି ପରିଶେଷରେ ମନେ କଲେ, ଆମର ତ ବରପକ୍ଷ, ଏତେ ଭୟ ଉଦ୍‌ବେଗର କାରଣ କଣ ? ଏହା ଭାବି ତାଙ୍କ ନିକଟକୁ ଖଣ୍ଡେ ପତ୍ର ଲେଖିଲେ । ପତ୍ରର ସାର ମର୍ମ ଏହି—ମୋର ଏ ପ୍ରସ୍ତାବରେ

ତାଙ୍କର ଅମତ ନ ଥିଲେ ସୁଦ୍ଧା ଲକ୍ଷ୍ମୀଧରର ମତାମତ ନ ବୁଝି ମୁଁ ବର୍ତ୍ତମାନ କିଛି ସ୍ଥିର କରି ପାରୁ ନାହିଁ। ଯଥାସମୟରେ ସମସ୍ତ ବିଷୟ ବୁଝି ପାରିବେ।

ମାୟାଧର ବାବୁଙ୍କ ପତ୍ର ପାଇ ଲକ୍ଷ୍ମୀଧର ବିଶେଷ ଆଗ୍ରହ ପ୍ରକାଶ କରିବାର ବୋଧ ହେଲା ନାହିଁ। ତଥାପି ମାମୁଙ୍କ ମନରକ୍ଷା କରିବା ଲାଗି ସେ ତାଙ୍କ ନିକଟକୁ ଏହିପରି ଏକ ପତ୍ର ଲେଖିଦେଇ ନିଶ୍ଚିନ୍ତ ହୋଇ ରହିଲା।

ଶ୍ରୀଚରଣକମଳେଷୁ—

ଆପଣଙ୍କ ପତ୍ର ପାଇ ସମସ୍ତ ବିଷୟ ଅବଗତ ହେଲି। ଏ ବିଷୟରେ ମୋର ମତ ବୁଝିବା ଅନାବଶ୍ୟକ, ଆପଣଙ୍କ କଥା ମୋର ସର୍ବଦା ଶିରୋଧାର୍ଯ୍ୟ। ଆପଣ ଚିରକାଳ ଆମ୍ଭମାନଙ୍କର ଶୁଭାକାଙ୍କ୍ଷୀ ଏବଂ ଆମ୍ଭମାନଙ୍କ ମଙ୍ଗଳ ନିମନ୍ତେ ଆପଣ ଯେ ସମସ୍ତ ବିଷୟ ଭଲ କରି ବିବେଚନା କରି କାର୍ଯ୍ୟ କରିବେ, ଏଥିରେ ମୋର ଲେଶମାତ୍ର ସନ୍ଦେହ ନାହିଁ।

ବର୍ତ୍ତମାନ ଟିକିଏ ବ୍ୟସ୍ତ ଥିବାରୁ ବେଶି କିଛି ଲେଖି ପାରିଲି ନାହିଁ, ପରେ ସବିଶେଷ ଲେଖିବି। ଇତି।

ନିବେଦକ ସେବକ
ଲକ୍ଷ୍ମୀଧର

ଲକ୍ଷ୍ମୀଧରର ପତ୍ର ପାଇ ମାୟାଧର ବାବୁ ଏକପ୍ରକାର ନିଶ୍ଚିନ୍ତ ହୋଇଗଲେ ଏବଂ ସେହିଦିନ ଏ ବିଷୟରେ ବଳରାମ ବାବୁଙ୍କ ନିକଟକୁ ପତ୍ର ଲେଖିଲେ।

ବିବାହର ଦିନ ଇତ୍ୟାଦି ସ୍ଥିର ହୋଇଯିବା ପରେ ମାଷ୍ଟ୍ରଙ୍କର ବାବୁ ଲକ୍ଷ୍ମୀଧରଙ୍କୁ ଲେଖିଲେ –

ଆଗାମୀ ମାଘମାସ ଶୁକ୍ଳପକ୍ଷ ପଞ୍ଚମୀ ଅର୍ଥାତ୍ ଜାନୁୟାରୀ ମାସ ୨୩ ତାରିଖରେ ବିବାହର ଦିନ ଧାର୍ଯ୍ୟ ହୋଇଅଛି । ଅନ୍ତତଃ ୧୫ ଦିନ ପୂର୍ବରୁ ଯେପରି କୁଟୁମ୍ବ ଏଠାକୁ ଆସି, ସେ ବିଷୟରେ ଚେଷ୍ଟା କରିବ । ଏ ବିବାହ କଥା ଶୁଣି ସମସ୍ତେ ଖୁସି ଅଛନ୍ତି । ଇତ୍ୟାଦି ।

ଏତେ ଶୀଘ୍ର ଏ କଥାର ନିଷ୍ପତ୍ତି ହୋଇଯିବ ବୋଲି ଲକ୍ଷ୍ମୀଧର ସ୍ୱପ୍ନରେ ମଧ୍ୟ ଭାବି ନ ଥିଲେ । ସେ ମନେ କରିଥିଲେ, ମୁଁ ପ୍ରକାଶ୍ୟ ଭାବରେ କୌଣସି ପ୍ରତିବାଦ ନ କଲି ମୁଖ୍ୟ ପତ୍ରରେ ଯେଉଁ କ୍ଷୀଣ ଇଙ୍ଗିତ ଦେଇଅଛି ସେଥିରେ ମୋର ଅନ୍ୟ କିଛି ସମ୍ବାଦ ନ ପାଇବା ପର୍ଯ୍ୟନ୍ତ ସେମାନେ କିଛି କରିବେ ନାହିଁ, ଅନ୍ତତଃ ଶେଷ ଜବାବ ଦେବା ପୂର୍ବରୁ ସେ ବିଷୟ ମୋତେ ସମ୍ବାଦ ଦେବେ । କିନ୍ତୁ ହଠାତ୍ ଏପରି ପତ୍ର ପାଇ ଲକ୍ଷ୍ମୀଧର ବଡ଼ ବିଷମ ସମସ୍ୟାରେ ପଡ଼ିଲେ । କି ଉତ୍ତର ଦେବେ, କିଛି ଠିକ୍ କରି ପାରିଲେ ନାହିଁ । ଶେଷରେ ନାନା ଚିନ୍ତା ପରେ ସେ ତାଙ୍କର ବାଲ୍ୟସଖା ବିନୋଦ ନିକଟକୁ ନିଜର ମନୋଭାବ ବ୍ୟକ୍ତ କରି ନିମ୍ନୋକ୍ତ ପ୍ରକାରର ଖଣ୍ଡେ ପତ୍ର ଲେଖିଲେ :—

ପ୍ରିୟ ବିନୋଦ,

ତୁମେ ବୋଧହୁଏ ଜେଲର ବାବୁଙ୍କ କନ୍ୟା ସହିତ ମୋର ବିବାହ ହେଉଥିବା କଥା ଶୁଣିଥିବ । ମୁଁ କାଲି ତାଙ୍କ ପତ୍ରରୁ

ଏ ଖବର ପାଇ ଆନନ୍ଦିତ ହେବି କି ଦୁଃଖିତ ହେବି, କିଛି ସ୍ଥିର କରିପାରୁ ନାହିଁ । ବଳରାମ ବାବୁ ଅବଶ୍ୟ ଆମ ଦେଶର ଜଣେ ବଡ଼ଲୋକ ଏବଂ ତାଙ୍କ ସହିତ ସମ୍ପର୍କ କରିବା ଗୋଟାଏ ଗୌରବର ବିଷୟ ହୋଇପାରେ, କିନ୍ତୁ ଯାହା ହସ୍ତ ସହିତ ମୋ କନ୍ୟାର ଚିରଦିନ ଅଚ୍ଛେଦ୍ୟ ବନ୍ଧନରେ ବନ୍ଧା ହେବ, ତାକୁ ଥରେ ଆଖିରେ ଦେଖିବା କଥା ଦୂରେ ଥାଉ, ତାର ସ୍ବଭାବ ଚରିତ୍ର ଇତ୍ୟାଦି ବିଷୟରେ ମୁଁ କିଛି ଖବର ଜାଣେ ନାହିଁ ବା ଜାଣିବାର ସୁବିଧା ମଧ୍ୟ ନାହିଁ । ଏପରି ଅବସ୍ଥାରେ କନ୍ୟା ଦେଖି ବିବାହ କରିବା କେତେଦୂର ସମୀଚୀନ, ତାହା ତୁମେ ବୁଝି ପାରୁଥିବ । ମୁଁ ଅବଶ୍ୟ ସାହେବମାନଙ୍କପରି କୋର୍ଟସିପ୍ କରି ବିବାହ କରିବାକୁ କହୁନାହିଁ, ତେବେ ଏପରି ଗୋଟାଏ ପବିତ୍ର ସମ୍ପର୍କକୁ ବ୍ୟବସାୟ ବାଣିଜ୍ୟପରି କେବଳ ଚୁକ୍ତି ଜବାବରେ ସ୍ଥିର କରିବାର ମୁଁ ପକ୍ଷପାତୀ ନୁହେଁ । କେଜାଣି ଅବା, ସେ ରୂପ ଗୁଣରେ ଅସାମାନ୍ୟା, କିନ୍ତୁ ସେଇଟା ମୋର ସୌଭାଗ୍ୟ ଉପରେ ନିର୍ଭର କରେ; ପୁଣି ଅନ୍ୟ ଦିଗରେ ସମ୍ଭାବନା ତ କମ୍ ନୁହେଁ । ତେବେ ଏପରି ଗୋଟାଏ ଗୁରୁତର ବିଷୟକୁ କେବଳ ଭାଗ୍ୟ ଖେଳର ହାରଜିତ ଉପରେ ଛାଡ଼ିଦେବା ଉଚିତ କି ?

ଯାହା ହେଉ ତମକୁ ମୋର ବିଶେଷ ଅନୁରୋଧ ଯେ, ତୁମେ କନ୍ୟା ସମ୍ବନ୍ଧରେ ଯାବତୀୟ ବିଷୟ ଭଲ କରି ବୁଝି ସରଳ ଭାବରେ ମୋ ନିକଟକୁ ଲେଖିବ । ମୁଁ ତମର ପ୍ରତି କଥାରେ କେତେଦୂର ଆସ୍ଥା ସ୍ଥାପନ କରେଁ, ତାହା ତମେ ଜାଣ । ଏ ବିଷୟରେ ମୋର ଭବିଷ୍ୟତର ସୁଖ ଦୁଃଖ ତମ ହାତରେ ।

ମୁଁ ମଧ୍ୟ ଏବରୁ ବୟସ୍କ ଘରେ ତାହା ନିକଟରୁ ଶିଖି ପାରୁ ନାହିଁ ଅଭିଭାବକମାନେ ଯେ ଆମର ମଙ୍ଗଳ ବା ସୁଖ ନ ଖୋଜନ୍ତି, ତାହା ମୁଁ କହୁ ନାହିଁ, କେବଳ ସେମାନେ ଯେତ ପୁରାତନର ଧ୍ୟେୟ ବେଶ ଜୋର କରୁ ଥାନ୍ତି, ତାହାହେଲେ ଅନେକ ଅକଲ୍ୟାଣର ହାତରୁ ରକ୍ଷା ମିଳୁଥାନ୍ତା ।

ମୁଁ ଏଠି ଲେଖିଦେଇ ନିଶ୍ଚିନ୍ତ ନୁହେଁ । ଯଦି ସୁବିଧା ହୁଏ, ମୁଁ ପୂର୍ବରୁ ଯାଇ ତମ ସଙ୍ଗରେ ପରାମର୍ଶ କରିବି 'ଏ ଅନ୍ୟାୟ" ଶାସ୍ତ୍ର ବିରୋଧ ଭାବରେ ବୁଝିବାକୁ ଚେଷ୍ଟା କରିବ । ବର୍ତ୍ତମାନ ପ୍ରାୟ ଦୁଇ ମାସରୁ ଅଧିକ ସମୟ ଅଛି, ଆବଶ ନ ହେଲେ ଏଥିମଧ୍ୟରେ ଲଗ୍ନ ପତ୍ର ଅକ୍ଷେଣରେ ହୋଇପାରେ ।

ଏ ବିଷୟ ଅନ୍ୟ କାହାରି ଆଗରେ ଯେପରି ପ୍ରକାଶ ନ ହୁଏ । ଆଶା କରେଁ, ତମମାନଙ୍କର ସମସ୍ତ ମଙ୍ଗଳ । ଇତି ।

ତମର ସ୍ନେହର
ଲକ୍ଷ୍ମୀଧର

ପରବର୍ତ୍ତୀ ଡାକରେ ଚିଠି ପାଇ ଦେଇ ଲକ୍ଷ୍ମୀଧର ଟିକିଏ ଆଶ୍ୱସ୍ତ ହେଲେ, କିନ୍ତୁ ମନରେ ଆଉ ଶାନ୍ତି ରହିଲା ନାହିଁ ।

( ୩ )

ବିବାହର ଏବେ ପ୍ରାୟ ମାସକରୁ ଉଣା ଅଛି । ଏଣେ ପୂର୍ବରୁ ତ ଆଉ ବଳରାମ ବାବୁଙ୍କୁ ଛୁଟି ମିଳିବ ନାହିଁ । ଏଣୁ ସେ ତାଙ୍କର

କୁଲିଦ୍ୱାରା ଜିନିଷପତ୍ର ସବୁ ଗାଡ଼ିକୁ ପଠାଇ ଦେଇ ତଣ ସ୍ତ୍ରୀ-ଲୋକମାନଙ୍କ ସହିତ ଯାଇ ଖଣ୍ଡିଏ ଦ୍ୱିତୀୟ ଶ୍ରେଣୀ କୋଠରୀରେ ପ୍ରବେଶ କଲେ । କୋଠରୀ ମଧ୍ୟରେ ଖୁବ୍ ସମ୍ଭବ ଜଣେ ମାନ୍ଦ୍ରାଜୀ ଯୁବକ ଛଡ଼ା ଅନ୍ୟ କେହି ନ ଥିଲେ । ତାଙ୍କ ଜିନିଷପତ୍ର ସବୁ ଯଥାସ୍ଥାନରେ ରଖିବାର ବନ୍ଦୋବସ୍ତ କରି ଦେଇ ଓ ସମସ୍ତଙ୍କର ବସିବାର ସ୍ଥାନ ଠିକ୍ କରି ଦେଇ ଗୋଟିଏ ସିଗାରେଟ୍ ଲଗାଇ ଯୁବକଟି ସହିତ ସ୍ୱଚ୍ଛନ୍ଦରେ କଥାବାର୍ତ୍ତା ଆରମ୍ଭ କରି ଦେଲେ ।

କଥାବାର୍ତ୍ତା କରୁ କରୁ ସେ ହଠାତ୍ ବୃଦ୍ଧ ଦେଖିଲେ ଯେ ବ୍ୟାଗ୍ ଖଣ୍ଡି କାହିଁ ଦେଖାଯାଉ ନାହିଁ । ଜିନିଷପତ୍ର ସବୁ ଲେଉଟପାଲଟ କରି ଦେଖିଲେ ଯେ ଗାଡ଼ିରେ ବ୍ୟାଗ୍ ନାହିଁ । ନିଶ୍ଚୟ ୱେଟିଙ୍ଗ୍ ରୁମ୍‌ରେ ଥୁଇ ଆସିଛି ମନେ କରି ସେ ତତ୍‌ପର ହୋଇ ଗାଡ଼ିରୁ ଓହ୍ଲାଇ ଷ୍ଟେସନ ଘର ଆଡ଼କୁ ଦୌଡ଼ିଲେ । ସେତେବେଳକୁ ଫାଷ୍ଟ ବେଲ୍ (ଘଣ୍ଟା) ବାଜି ଗଲାଣି । ବାକି ପ୍ରାୟ ୨।୩ ମିନିଟରୁ ବେଶୀ ସମୟ ନାହିଁ ।

ଢଂ ଢଂ ଦ୍ୱିତୀୟ ବେଲ୍ ବାଜିଗଲା, ପ୍ଲାଟଫର୍ମ ଉପରେ ଛୁଟାଛୁଟି ଦୌଡ଼ା ଦୌଡ଼ି ଲାଗିଅଛି । ଲୋକ କୋଳାହଳରେ ପଦେକଥା ଶୁଣିବାର ଜୋ' ନାହିଁ । ପାଣି ଓ ଚାହା ଫେରିବାଲାଙ୍କ ମୁହଁ ବାହାର କରି ସେମାନଙ୍କୁ ଦୃଷ୍ଟି ଦେଇ ଉତ୍କଣ୍ଠାର ସହିତ ଅନାଇ ରହିଛନ୍ତି, କାରଣ ଲୋକଟି ତ ଫେରି ଆସିଲାଣି, ନାହିଁ ହତ ତ କେଉଁଠାରେ ଦେଖା ଯାଉନାହାନ୍ତି ! କାଳର ଗତିପରି ରେଲଗାଡ଼ି କାହାରିକୁ ଅପେକ୍ଷା କରେ ନାହିଁ । ସେ କଣ ଗୋଟିଏ

ଝଙ୍କଟ ଭିଟି ମାଣ୍ଡ ରାହ୍ନ ଗୁଡ଼ଦେଲ୍ ଏବଂ ତାହା ପରେ ପରେ ଧର୍ଷିତ ରମଣୀ କଣ୍ଠର କ୍ଷୀଣ କ୍ରନ୍ଦନଧ୍ୱନି କେଉଁଆଡ଼େ ମିଶିଗଲା, ତାହ ସେଥିମାନଙ୍କ ଛଡ଼ା ଅନ୍ୟ କେହି ଜାଣି ପାରିଲେ ନାହିଁ ।

ମାଳୀ ଓ ହେମ ମନେ ମନେ ବେଶି ଅଧୀର ହୋଇ ଉଠିଲେ କଣ କରିବେ କିଛି ଠିକ୍ କରି ପାରିଲେ ନାହିଁ । ସେମାନେ ନିଜର ଅବସ୍ଥା ଭାବିବାକୁ ଲାଗିଲେ, ସେମାନଙ୍କ ମନରେ କ୍ରୋଧ ଦ୍ୱିଗୁଣ ହୋଇ ଉଠିଲା । ଏମାନେ ଅବଳା ସ୍ତ୍ରୀ ଜାତି, ସଂସାରର ଗତିବିଧି ବିଷୟରେ ସମ୍ପୂର୍ଣ୍ଣ ଅନଭିଜ୍ଞ, ଘରେ ପୁଣି ବନ୍ଧୁ ପରିବାର ବର୍ଜିତ କୁଟୀରର ସୁକୁମାର ଫୁଲଗଛ ପରି ସେମାନେ ବାହାର ଦୁନିଆ ଛଡ଼ା ଏବେ ହେଉଛି ବାହାରର ଦାରୁଣ ଘାତ ପ୍ରତିଘାତ ଦେଖି ନାହାନ୍ତି । ଏବେ ତ ପାଖରେ ଡାକିଲା ଭଳି ପିଲାଟିଏ ବୁଝା ନାହିଁ, ଘରେ ସେଇଁ ଲୋକଟି କୋଠରି ମଧ୍ୟରେ ଅଛି, ତାହାର ନ ଥିବା ଅପେକ୍ଷା ଥିବାକୁ ସେମାନେ ଆହୁରି ଭୟାବହ ମନେ କରୁଅଛନ୍ତି । ନିଜର ଅବସ୍ଥା ଭଲକରି ଠିକଏ ଭାବିବାକୁ ବା ସ୍ୱାଧୀନ ଭାବରେ କଥାଭାଷା ହେବାକୁ ବୁଝା ସେମାନଙ୍କର କ୍ଷମତା ନାହିଁ । ସେମାନେ ଚକ୍ଷୁ-ଛିଦ୍ରରେ କେବଳ ଅନ୍ଧକାର—ସୂଚୀଭେଦ୍ୟ ଅନ୍ଧକାର ଦେଖୁଅଛନ୍ତି । ସେମାନଙ୍କର ମନେ ହେଉଅଛି, ଯେପରି ଗୋଟାଏ ଶାମକାସ୍ତ ଦୁର୍ବୃତ୍ତ ଦୈତ୍ୟ ସେମାନଙ୍କୁ ଗୋଟାଏ ରଥରେ ବସାଇ ଆକାଶ ମାର୍ଗରେ ଅପୂର୍ବ ରାଜ୍ୟ ଆଡ଼କୁ ନେଇ ଯାଉଅଛି ।

ଏମାନଙ୍କର ଏପରି ଅବସ୍ଥା ଦେଖି ଯୁବକଟି ଆଉ ବେଶିକ୍ଷଣ ନିଶ୍ଚିନ୍ତ ରହି ପାରିଲା ନାହିଁ । ସେ ସେମାନଙ୍କୁ ନାନା ଉପାୟରେ

ସ୍ୱରବୋଧ ଦେବାକୁ ଚେଷ୍ଟା କଲା, କିନ୍ତୁ ଫଳ ମଧ୍ୟରେ ଏତିକି ହେଲା ଯେ, ସେମାନେ ତା କଥାରେ କର୍ଣ୍ଣପାତ ନ କରି କ୍ରମେ ଅଧିକ ଅଧୀର ହୋଇ ଉଠିଲେ । ଯୁବକଟି ମଧ୍ୟ ନିରସ୍ତ ହୋଇ ନିଜ ସ୍ଥାନରେ ଯାଇ ବସିଲା ।

ପରସ୍ପର କଥାବାର୍ତ୍ତା କରିବା ସମୟରେ ଯୁବକ ସେମାନଙ୍କ ସମ୍ବନ୍ଧରେ କିଛିଟା ଆଭାସ ପାଇଥିଲା । କିଛିକ୍ଷଣ ପରେ ସେମାନଙ୍କୁ ଟିକିଏ ଆଶ୍ୱସ୍ତ ହେବାର ଦେଖି ସେମାନଙ୍କ ଘର, କେଉଁଠାରେ ଥିଲେ, କେଉଁଠାକୁ ଯାଉଛନ୍ତି ଇତ୍ୟାଦି ବିଷୟରେ ଅଧା ବଙ୍ଗଳା ଅଧା ହିନ୍ଦୀ ଭାଷାରେ ନାନାପ୍ରକାର ପ୍ରଶ୍ନ କଲା ଏବଂ ସେମାନେ ମଧ୍ୟ ଯନ୍ତ୍ରଚାଳିତ ପରି କେତେଗୁଡ଼ିଏ ପ୍ରଶ୍ନର ଉତ୍ତର ଦେଇଗଲେ, କିନ୍ତୁ ମନେ ମନେ ଯୁବକ ସମ୍ବନ୍ଧରେ ସେମାନଙ୍କର ସନ୍ଦେହ ଅଧିକ ଦୃଢ଼ୀଭୂତ ହେବାକୁ ଲାଗିଲା । ସେମାନେ ମନେ କଲେ କୌଣସି ଦୁରଭିସନ୍ଧି ନ ଥିଲେ ଏ ଏତେ ପଚାରିବା କାହିଁକି ? ରେଳଗାଡ଼ିରେ ଯେ ନାନା ରକମର ଅତ୍ୟାଚାର ହୁଏ, ଶୁଣାଶୁଣିରେ ସେମାନେ କିଛି ଜାଣିଥିଲେ । ବିଶେଷତଃ ଭଦ୍ର ଛଦ୍ମଧାରୀ ପୋଷାକର ଅନ୍ତରାଳରେ ଯେ କେତେ ମାତ୍ରା ମମତାର ନିର୍ମମ ଧାରା ବହିପାରେ ଏକଥା ସେମାନଙ୍କ ଧାରଣାର ଗୋଚର ନ ଥିଲା । ଫଳତଃ ମନର ସନ୍ଦେହଟିକୁ ସେମାନେ ବହୁଯତ୍ନରେ ବଢ଼ାଇବାକୁ ଲାଗିଲେ । ଯେଉଁସବୁ ଘଟଣା ବା ପ୍ରମାଣ ଏହାର ପୋଷକତା କଲା, ସେମାନେ ତାକୁ ଆଦର ସହକାରେ ଅଭ୍ୟର୍ଥନା କରିନେଲେ ଏବଂ ବାକି ସେସବୁ ଏହାର ବିରୁଦ୍ଧାଚରଣ କଲା, ସେମାନେ ତାକୁ ମିଥ୍ୟାସାକ୍ଷ୍ୟ ବୋଲି ଇଜଲାସରୁ ବିଦାୟ ଦେଲେ ।

ଟିକିଏ ପ୍ରକୃତିସ୍ଥ ହେଲା ପରେ, ପରିଣାମ କଣ ହେବ, ସେ ବିଷୟରେ ଚିନ୍ତା ନ କରି ସେମାନେ ବର୍ତ୍ତମାନ କଣ କର୍ତ୍ତବ୍ୟ, ତାହା ସ୍ଥିର କରିବାକୁ ଲାଗିଲେ । ପ୍ରଥମେ ସେମାନେ ନିଜ ନିଜର ଅଳଙ୍କାରପାତି କ୍ରମେ କ୍ରମେ ଦେହରୁ କାଢ଼ି କାନିରେ ବାନ୍ଧିଲେ— ଏତେ ଅଳଙ୍କାର ଦେଖିଲେ କାଳେ କେହି ଲୋଭ ସମ୍ଭାଳି ନ ପାରିବ । ଯୁବକଟି ଏ ସବୁ ଲକ୍ଷ୍ୟ କରି କାହାରିକୁ କିଛି ନ କହି ମନେ ମନେ ଟିକିଏ ନ ହସି ରହି ପାରିଲା ନାହିଁ ।

ବଡ଼ ବଡ଼ ଷ୍ଟେସନ ନିକଟରେ ଯୁବକଟି ଯାଇ ସେମାନଙ୍କର କଣ ଦରକାର, କଣ ଆଣିବାକୁ ହେବ ଇତ୍ୟାଦି ପ୍ରଶ୍ନ କରେ, କିନ୍ତୁ ସେମାନେ ସବୁ କଥାରେ ନିରୁତ୍ତର । ମନେ ମନେ ଭାବନ୍ତି, ଶାଠ୍ୟର ମୁଖ ସବୁବେଳେ ମଧୁର ।

ସେମାନଙ୍କର ଆଖିର ନିଦ ଆସିବା ଦୂରରେ ଥାଉ, ଜଣକଠାରୁ ଅନ୍ୟ ଜଣେ ମୁହୂର୍ତ୍ତକ ପାଇଁ ସୁଦ୍ଧା ଅନ୍ତର ହେବାକୁ ସାହସ କଲେ ନାହିଁ, କେଜାଣି ପଛ ଏଥିମଧ୍ୟରେ କିଛି ବିପଦ ଘଟିଯାଏ । ସେମାନଙ୍କର ଏପରି ଦୁରବସ୍ଥା ଦେଖି ଯୁବକ ଟିକିଏ ଶୋଇବାର ଛଳନା କଲା, କିନ୍ତୁ ଏମାନଙ୍କ ଲାଗି ତା ଆଖିରେ ନିଦ କାହିଁ ?

ଆସାନ୍‌ସୋଲ ଜଙ୍କ୍‌ସନରେ ଗାଡ଼ି ପହଞ୍ଚିଲା । ଏଇଠାରୁ ଏ ଗାଡ଼ି ବଦଳାଇ ଅନ୍ୟ ଗାଡ଼ିରେ ଚଢ଼ିବାକୁ ହେବ । ଯୁବକ ସେମାନଙ୍କୁ ଅନ୍ୟ ଗାଡ଼ିକୁ ଯିବାକୁ ଯେତେ ପ୍ରବର୍ତ୍ତାଇଲା, ସେମାନେ ମାନିଲେ ନାହିଁ, କେଜାଣି ପଛ ଏହା ମଧ୍ୟରେ କିଛି ଚକ୍ରାନ୍ତ

ଥାଏ । ଶେଷରେ ଅନ୍ୟାନ୍ୟ ଆରୋହୀମାନେ ଓହ୍ଲାଇବାର ଦେଖି ସେମାନେ ଯୁବକର ଅବର୍ଦ୍ଧଣ ଅନୁଯାୟୀ ଜଣା ତାଙ୍କରେ ଯାଇ ବସିଲେ, ଯୁବକ ମଧ୍ୟ କେତେକ କୃଲଦ୍ୱାର ... କେତେକ ନାଙ୍କ ସେମାନଙ୍କର ସବୁ ଜଣକ ଅନ୍ୟ ଗାଡ଼ିକୁ ବୁଝାଇ ଦେଇଥିଲେ ।

ପ୍ରଭାତ ହେବାରୁ ସେମାନଙ୍କ ମନରେ ଟିକିଏ ମାୟା ହେଲା ଏବଂ ଯୁବକ ପ୍ରତି ଅବଜ୍ଞାର ମଧ୍ୟ ଟିକିଏ କମିଲା । ଯୁବକ ସେମାନଙ୍କ ସୁବିଧା ସକାଶେ ପାଣି ଆଣି ଦେବାରୁ ଆରମ୍ଭ କରି ଜଳଖିଆ ଇତ୍ୟାଦିର ବନ୍ଦୋବସ୍ତ କରିବା ପର୍ଯ୍ୟନ୍ତ ସବୁ କାର୍ଯ୍ୟ ଅଯାଚିତ ଭାବରେ କରୁଥାଏ—ଯେପରି କି ଏମାନେ ତାର କୌଣସି ଘନିଷ୍ଠ ଆତ୍ମୀୟ । ବୋଧହୁଏ ନିଜେ ହଣ ଥିଲେ ସେମାନଙ୍କ ଲାଗି ଏତେ ଯତ୍ନ କରିଥାଆନ୍ତା କି ନାହିଁ ସନ୍ଦେହ । ଅଥଚ ପ୍ରତି କାର୍ଯ୍ୟ ଭଦ୍ରତା ଓ ଲୌକିକତାର ସୀମା ମଧ୍ୟରେ ରହି ଏପରି ଧୀର ଶାନ୍ତ ଭାବରେ କରି ଯାଉଥାଏ ଯେପରି କି ଏମାନଙ୍କ ପାଇଁ ସେ ଯୋଗାଏ ବିଶେଷ କିଛି କାର୍ଯ୍ୟ କରୁ ନାହିଁ—ଏସବୁ ତାର କର୍ତ୍ତବ୍ୟର ସୀମା ଭିତରେ ।

ଏତେ ଅକାଟ୍ୟ ପ୍ରମାଣ ସମ୍ମୁଖରେ ସେମାନଙ୍କର ମନର ସଂସ୍କାର ଆଉ କେଣିଶଣ ଛିଡ଼ି ପାରିଲା ନାହିଁ । କଠିନ ବରଫ ଯେପରି ଥରେ ଦ୍ରବ ହେବାକୁ ଆରମ୍ଭ କଲେ ଜଳ ହୋଇ ତରଳ ନ ହେବା ପର୍ଯ୍ୟନ୍ତ ଶାନ୍ତ ହୁଏ ନାହିଁ, ସେମାନେ ନବନ୍ଧପତ ତା ଉପରେ ଥରେ ବିଶ୍ୱାସ ସ୍ଥାପନ କଲା ଉତ୍ତାରୁ ତା ଆଡ଼ୁରୁ କ୍ରମଶଃ ଆକୃଷ୍ଟ ନ ହୋଇ ରହି ପାରିଲେ ନାହିଁ । ସେମାନେ ଏଣିକି ତାର

ଧୂପଗନ୍ଧ ।

ମୃତ କାର୍ଯ୍ୟ ଓ କଥାରେ ମହାତ୍ମାର ସୂଚନା ଦେଖି ପାରନ୍ତେ । ଆହା ! ଏପରି ପର-ଉପକାରୀ ଲୋକ ପୃଥିବୀ ପୃଷ୍ଠରେ ଅଛନ୍ତି ? ନିଜର ଉପକାରକୁ କିଛି ନାହିଁ, ଆମର ଅପତ୍ତି ଦେଖି ଏମନ ଉପକାରକଲେ ଯେ, ନିଜର ସୁଖ ସୁବିଧା ସବୁ ଭୁଲିଦେଇ ଆପଣମାନଙ୍କ ପିଲା ବଞ୍ଚାଇବାରେ ଲାଗିଛି । ଯଦି ଏପରି ଲୋକଟାଏ ନ ହୁଟାଇଥିଲେ ଆମର ଦଶା କଣ ହୋଇଥାନ୍ତା ? ଛି, ଛି, ଏପରି ଲୋକକୁ ପୁଣି ଆମେ ଅବିଶ୍ୱାସ କରିଥିଲୁଁ ! ଏଥିରେ ନିଶ୍ଚୟ ଆମର ପାପ ହୋଇଛି ।

ମାଳୀ କହିଲା, "ତେମେ ଯାହା କହ, ତାଙ୍କୁ ଦେଖି ମୋ ମନରେ କାହିଁକି ପ୍ରଥମରୁ ସନ୍ଦେହ ଟିକିଏ ନ ଥିଲା । ଏତେ ସୁନ୍ଦର ଲୋକ, ଏମନ୍ତ ଅବିଶ୍ୱାସୀ ହୁଅନ୍ତା କି ?"

ମୋହନ ହସି ହସି କହିଲା, "ତେମେ ତ କଣ ତା ରୂପରେ ଏକାବେଳକେ ମଜି ଗଲଣି ! ଯେତେଣେ ତ ସବୁ ଠିକ୍ ଠାକ୍ ସରିଲାଣି, ନ ହେଲେ ଅବା ଦେଖା ଯାଇଥାନ୍ତା । ଆଜି ନ ହେଲେ କଣ ! ଦେଖାନାହିଁ କି ଶୁଣାନାହିଁ, କୁଆଡ଼ୁ କେଉଁଠାଏ ବର ଧରିଆଣିବେ ଯେ ସେ କାଳଆଗୁଣ୍ଡା ହେଉଛନ୍ତି, ନା କଣ ହେଉଛନ୍ତି ଭେଜାଣି ?"

ମାଳୀ "ଯା, ମଁ" କହୁ କହୁ ମୁହଁ ବୁଲାଇ ବସିଲା ।

ମୋହନ କହିଲା, "ମନକଥାଟା ଖୋଲି ଦେଲୁ ତ ନା, ସେଥିଲାଗି ତେଲ ମୋର ଦୋଷ । ଆଜି ସେ ଲୋକଟିର ଆମ ଘରକାମେ ଏତେ ଧାଆଁ ଧପଡ଼ା ଲାଗିଛି କାହିଁକି ଜାଣିଛ ?"

ମାଳୀ ଟିକିଏ ବିରକ୍ତି ପ୍ରକାଶ କରି କହିଲା, "ଯା ମଁ, ମୁଁ କିଛି ଜାଣେ ନାହିଁ, ମୋ ପାଖରେ ମିଛିଟା ଲଗାଅନା ।"

ହେମ କହିଲା, "ମୁଁ କଣ କରେ ? କେବଳ ତମର ଏହି ସ୍ନେହମୂର୍ତ୍ତି ଖଣ୍ଡିକ ଲାଗି । ସୁନ୍ଦର ମୂର୍ତ୍ତିର ସବୁଠାରେ ଜୟ । ଭାଙ୍ଗିଗଲା ଖଣ୍ଡା ତ ହାତରୁ ଖସିପଡ଼ିବ, ଏ ଅବା କେଉଁ ଛାର ? ନ ହେଲେ ଭଣ ତାର ଗରଜ ବସ୍ତୁ ନ ଥିଲା ନାଥ, ସେ ଆମପାଇଁ ଏତେ ସିଦ୍ଧାନ୍ତ କରନ୍ତା ? ମନ୍ଦିରେ ଥାଇ ଲକ୍ଷ୍ମୀ ଏଥିରେ ନାରୀର ଏକା ସବୁଠାରୁ ବେଶି । 'କୁସୁମ ପରଶେ ପଟ କମ୍ପରେ' ।"

ମାଳୀ ଆଉ ସମ୍ଭାଳି ନପାରି କହିଲା, "ତମର କଣ ଭାବ ହେମ ହେଉନାହିଁ କି ?" ହେମ କହିଲା, "ହେଉନାହିଁ କି, କେତେଦିନ କହିଦେଲ ପର୍ଯ୍ୟନ୍ତ ହବ ? ମନରେ ବେଗ ଥିଲେ, ପେଟ କଥା ପଚାରୁଛ କାଏଁ ?"

ଖଡ଼ଗପୁରଠାରେ ଯୁବକ ସେମାନଙ୍କ ମତ ଅନୁଯାୟୀ ଗୋବିନ୍ଦ ବାବୁଙ୍କ ଠିକଣାରେ ସଂକ୍ଷେପରେ ବାଟରେ ଦୁର୍ଘଟଣା ଘଟିଥିବା ଜଣେଇ ଟେଲିଗ୍ରାମ କରିଦେଲା ଏବଂ ସେମାନେ ସନ୍ଧ୍ୟା ୮ଟା ସମୟରେ କଟକ ଷ୍ଟେସନରେ ପହଞ୍ଚିବାର ସମ୍ବାଦ ମଧ୍ୟ ଦେଇଗଲା ।

ହେମ ଓ ମାଳୀ ମନେ ମନେ ଭାବିଲେ, ଆଉ କିଛି ସମୟ ପରେ ତ ଆମେ ତାଙ୍କୁ ଭେଟିପାରିବା । ଏ ଲୋକଟି ଆମ ପାଖରେ ଏତେ କଷ୍ଟ ସ୍ୱୀକାର କଲା, ଅଥଚ ଆମେ ଏପର୍ଯ୍ୟନ୍ତ ତା ସମ୍ବନ୍ଧରେ କିଛି ଜାଣି ପାରିଲେ ନାହିଁ । ଆମେ ଝିଅ ବୋଲି ସେ ଆମର ଏତେ ଉପକାର କଲା, ତାକୁ କଥାରେ ହେଲେ ଟିକିଏ କୃତଜ୍ଞତା ଜଣାଇବାକୁ କଣ ଆମର ଅଧିକାର ନାହିଁ ? ସେ ଯଦି କଟକରେ

ଉନ୍ମୋଚନ ଥାନ୍ତା, ତାହା ତାହାଙ୍କ ଅଥବା ଅନ୍ୟ କାହାଦ୍ୱାରା ସବୁ ବୁଝି ପାରା ନ ଯାଉଥିବ, କିନ୍ତୁ ସେ ଦୁଃଖ କଷ୍ଟ ପାଉଛନ୍ତି, କେଉଁଠାରେ ଲୁଚିଥିବ, କିଏ ଜାଣେ ? ଅଙ୍ଗ ମଧ୍ୟ ସେ ତ ଅଜଣା, ଅଚିହ୍ନା ଲୋକ, ତା ଆଗରେ ବା ଏତେ ଲାଜ କାହିଁକି ? ଏହିପରି ପାଡ଼ାଗ୍ରାମ ଶେଷ ହେମ ପ୍ରଥମରେ ସ୍ତ୍ରୀଲୋକର ସଙ୍କୋଚ ସନ୍ଦେହ, ସେପରି ଅବସ୍ଥାରେ ସେତେବେଳର ସମ୍ଭବ ଟିକିଏ କୃତଜ୍ଞତା ଜଣାଇ ଚେଷ୍ଟାରେ ତାକୁ ଶୁଣାଇ ଶୁଣାଇ ଯୁବକର ପରିଚୟ ଆଦି ପଚାରିଲ ।

ଯୁବକ ପ୍ରତ୍ୟୁତ୍ତରରେ ତାର ଏତିକି ପରିଚୟ ଦେଲା ଯେ, ତାର ଘର ପଶ୍ଚିମରେ, ତାର ଘର କଟକରେ କୌଣସି ସ୍ଥାନରେ କାର୍ଯ୍ୟ କରୁଥିବାରୁ ସେ ତାହା ନିକଟକୁ ଯାଉଥିଲା । ଉଦ୍ଦେଶ୍ୟ, ଯଦି ବନ୍ଧୁଙ୍କ ବାକିର ଖବର ଜାଣିପାଏ, ସୁବିଧା ଦେଖି ଥାଇ ଯିବ ।

ଯୁବକର କଥା ଶୁଣି ହେମ ଓ ମାଳୀ ସ୍ଥିର କଲେ, ଏ ସେତେ-ବେଳେ ଯୁବକର ଅନୁସନ୍ଧାନରେ ଆସିଛି, ଆମେମାନେ ଘରେ ଫେରିବାକୁ କହି ସେ ଯେପରି କୌଣସିଠାରେ ଶୀଘ୍ର ଭଲ କାର୍ଯ୍ୟ ପାଏ, ତାର ଚେଷ୍ଟା କରିବା । ସେ ଆମର ଯେଉଁ ଉପକାର କରିଛି, ଆମେ ଜୀବନରେ ତ କଦାପି ସେ ଋଣ ଶୁଝିପାରିବା ନାହିଁ । କେବଳ ଆମଦ୍ୱାରା ଯଦି ତାର କିଛି ହେଲେ ଉପକାର ହୁଏ, ତେବେ ଆମ ମନ ଟିକିଏ ଆଶ୍ୱସ୍ତ ହେବ ।

ଏହିପରି ନାନା ମନ୍ତବ୍ୟ ସ୍ଥିର କରି ସେମାନେ ଅତି ସାବଧାନରେ ତାର ନାମ, ଠିକଣା ଆଦି କଥା ଉଠାଇଲେ, ଯେପରି କ ସେମାନଙ୍କ

ମନୋଭାବ ସେ କିଛି ଜାଣି ନ ପାରେ । ଉତ୍ତରରେ ଯୁବକ କହିଲା, “ମୁଁ ତ ବର୍ତ୍ତମାନ କେଉଁଠାରେ ରହୁଛି, କଣ କରୁଛି, କିଛି ଠିକ୍ ନାହିଁ । ଘରର ଠିକଣା ବୁଝା ମୁଁ ଜାଣେ ନାହିଁ । ଯଦି କୌଣସି ସ୍ଥାନରେ ମୁଁ ଟିକଏ ସ୍ଥାୟୀଭାବରେ ରହେଁ, ତେବେ ମନଦ୍ୱାରା ଜଣାଇ ପାରେଁ । ମୋ ଠିକଣା ଜାଣି ଅବା ଆପଣମାନଙ୍କର କଣ ହେବ ? କେବଳ ମୋର ନାମଟା ଜାଣି ରଖନ୍ତୁ ଯେ ‘ଲଛମନ ଝ’ ।”

ଗାଡ଼ି ଆସି କଟକ ଷ୍ଟେସନରେ ପହଞ୍ଚିଲା । ଯୁବକଟି ତାହାର ଅନୁସନ୍ଧାନରେ ସେପରି ସାଙ୍ଗେ ସାଙ୍ଗେ ଗାଡ଼ିରୁ ଓହ୍ଲାଇ ପଡ଼ିଲା । ଗୋବର୍ଦ୍ଧନ ବାବୁ ପୂର୍ବରୁ ପ୍ରକାଶ ଇତ୍ୟାଦି ଦେଇ ବଡ଼ ଜାକ୍ଜମିର ଭାବରେ ସେଠାରେ ଅପେକ୍ଷା କରିଥିଲେ । ବ୍ୟସ୍ତଭାବରେ ଅନେକ କୋଠରୀ ଖୋଜାଖୋଜି କଲାପରେ ଫେରିବାବେଳେ ମାଳୀ ପ୍ରଦ୍ୟୁମ୍ନଙ୍କୁ ଦେଖି ପାରିଲେ, ଗୋଟାଏ ଦୀର୍ଘ ନିଃଶ୍ୱାସ ପକାଇ ଦେଇ ସେ ଟିକିଏ ଆଶ୍ୱସ୍ତ ହେଲେ ।

ଗୋବର୍ଦ୍ଧନ ବାବୁଙ୍କ ଧୂଆ ରାମ ମଧ୍ୟ ତାଙ୍କ ସଙ୍ଗତ ଷ୍ଟେସନକୁ ଆସିଥିଲା । ଗାଡ଼ିରୁ ହଠାତ୍ “ଲୋକ ପାଗଳ ପରେ ହେମ ରାମଦ୍ୱାରା ଗୋବର୍ଦ୍ଧନ ବାବୁଙ୍କୁ ଖବର ପଠାଇଲା ଯେ, ସେମାନଙ୍କ ସଙ୍ଗେ ଯେଉଁ ପଶ୍ଚିମା ଯୁବକଟି ଥିଲା, ସେ ବାଟରେ ସେମାନଙ୍କର ଅନେକ ଉପକାର କରିଅଛି, ଏପରି କି ସେ ପାଖରେ ନ ଥିଲେ ସେମାନଙ୍କୁ ଆଜି କେହି ଦେଖିଥାନ୍ତେ କି ନାହିଁ ସନ୍ଦେହ ।

ଧୂମ୍ରଗୁମ୍ଫା ।

ଏ କଥା ଶୁଣି ଗୋବିନ୍ଦ ବାବୁ ନିଜେ ଓ ଅନ୍ୟାନ୍ୟମାନଙ୍କଦ୍ୱାରା ଯୁବକର ଅନେକ ଅନୁସନ୍ଧାନ କଲେ, କିନ୍ତୁ କୌଣସିଠାରେ ତାକୁ ନ ପାଇ ନିରସ୍ତ ହୋଇ ରହିଲେ ।

ପ୍ରେମ ଓ ମାଳୀ କିନ୍ତୁ ଏଥିରେ ବଡ଼ ଦୁଃଖିତ ହେଲେ । ସେମାନେ ଆଉ ଥରେ ଗୋପନରେ ଗ୍ଳୋକା ଯୁବକର ଦ୍ୱାରା ନାନା ସ୍ଥାନରେ ଅନେକ ଖୋଜାଖୋଜି କଲେ ଓ ଶେଷରେ ହତାଶ ହୋଇ କ୍ଷୁଣ୍ଣ ମନରେ ଯାଇ ସବାଶରେ ବସିଲେ ।

( ୪ )

ଆଜି ମାଳୀର ବିଭାଘର । ବଳରାମ ବାବୁଙ୍କ ଘର ନିକଟରେ ହଲ୍ଲାକାରଣ୍ୟ । ବାଦ୍ୟ କୋଳାହଳ ଓ ଜନତାର କଳରବରେ କାନ ଅତାଡ଼ା ପଡ଼ି ଯାଉଛି । ମଝିରେ ମଝିରେ ରମଣୀ-କଣ୍ଠ-ନିଃସୃତ ହୁଳହୁଳିର ତେଜ ତ୍ରାମଗମ୍ଭ ଉଚ୍ଚକ ପଡ଼ୁଛି । ସୁଶୋଭିତ ମାଳୀର ବ୍ୟାକୁଳ ନୟନ ଧୂଳ ଘରର ମୁଣ୍ଡଆଡ଼େ ବୁଲି ବୁଲି ସମସ୍ତଙ୍କ ଚରଣତଳେ ଲୋଟି ସେପରି କୃପାଭିକ୍ଷା କରୁଅଛି ଏବଂ ତା' ସଙ୍ଗେ ମନ୍ତ୍ରସ୍ୱର କରୁଣ ମଧୁର ରାଗିଣୀ ମିଶି ମନକୁ ପଦେ ପଦେ ବ୍ୟାକୁଳର କରି ଦେଉଅଛି । ଆଜି ସମସ୍ତଙ୍କ ଚକ୍ଷୁ ଆର୍ଦ୍ର ଓ ସମସ୍ତଙ୍କ ମୁଖରେ ଗୋଟାଏ ବିଷାଦର ଛାୟା ପଡ଼ି ଯାଇଅଛି । ବଳରାମ ବାବୁଙ୍କ ସ୍ତ୍ରୀ ତ ଗୋଟାଏ କବେ ପଡ଼ି ଅଛନ୍ତି ସେ ତାଙ୍କର ଉଠିବାର ଶକ୍ତି ନାହିଁ । ବଳରାମ ବାବୁ ଏଡ଼େ ଧୀର ଗମ୍ଭୀର ଲୋକ, କିନ୍ତୁ ତାଙ୍କର ଚକ୍ଷୁଦ୍ୱୟ ଆଜି ରକ୍ତବର୍ଣ୍ଣ । ସେ ଦୁହାକୁ ଦୁହା ଲୁଗା କାନିରେ ଆଖି ପୋଛୁ-

ଅଛନ୍ତି । ଏତେବଡ଼ ଗୋଟାଏ କାର୍ଯ୍ୟ, କଣ ହେଲା, କଣ ନ ହେଲା ସେ ଅନ୍ତରୁ ତାଙ୍କର ଦୃଷ୍ଟି ନାହିଁ । କେହି ଜଣେ ପଚାରିଲେ, କେତେ-ବେଳେ ପଦେ କଣ କହି ଦେଉଛନ୍ତି, ନ ହେଲେ କେବଳ ମୂକପରି ବସି ଅଛନ୍ତି ।

ଏହିପରି ବେଦୀର ସମସ୍ତ କାର୍ଯ୍ୟ ଶେଷ ହୋଇଗଲା । ଜୁଆ ଖେଳିବା ପାଇଁ ବର କନ୍ୟାଙ୍କୁ ଘର ଭିତରକୁ ନେଇଗଲେ । ବରକୁ ଦେଖିବା ଲାଗି ସ୍ତ୍ରୀଲୋକମାନେ ଆଗରୁ ଧାଡ଼ି ବାନ୍ଧି ଛିଡ଼ା ହୋଇଗଲେ । ହେମ ବରକୁ ଦେଖି ପ୍ରଥମେ ଅନ୍ୟମନସ୍କ ହୋଇ ଛିଡ଼ା ହୋଇଗଲା । କିଛିକ୍ଷଣ ପରେ ସେ ସମ୍ଭାଳି ହୋଇ ନ ପାରି ପାଟି କରି ଉଠିଲା, "ବାଇନା ! ଏ ତ ଆମର ସେହି ଲଛମନ ଜୀ ।" ହେମ କଥା ଶୁଣି ମାଳୀ ପୁତ୍ରଣୀ ଭିତରୁ ଚମକି ଉଠିଲା । ସମସ୍ତେ ପରସ୍ପର ଆଡ଼କୁ କେବଳ ଅନାଅନି ହେଲେ । ହେମ ମଧ୍ୟ କିଛିକ୍ଷଣ ଅବାକ୍ ହୋଇ ରହିଗଲା । ବର ଟିକଏ ମୁରୁକେଇ ମୁରୁକେଇ ହସି ମୁହଁକୁ ତଳକୁ ପୋତି ଦେବାରୁ ହେମ ମନରେ ଆଉ ସନ୍ଦେହ ରହିଲା ନାହିଁ । ତାହା ପଣ୍ଡିତ ସେମାନେ ଛାମୁ ଦେଢ଼ଦିନ କାଳ ଏକ ରେଳ କାମରାରେ କଟାଇ ଆସି ଅଛନ୍ତି, ତା' ଭିତରେ କଣ ଏତେ ଭ୍ରମ ହୋଇପାରେ ।

ପ୍ରଥମ ସ୍ୱପ୍ନଦୃଷ୍ଟା ନିଜ ଚିହ୍ନିପାରିବାରୁ ହେମ ମନରେ ଟିକଏ ଆନନ୍ଦ ହେଲା । ସେ ଏ ସୁଯୋଗ ଛାଡ଼ି ନ ପାରି କହିଲା, "ଏ ତ ଆଜ୍ଞା ଭଲ କଲେ । ପ୍ରେମପ୍ରବେଶରେ ଭଦ୍ରଲୋକ ଘରର ବୋହୂଝିଅଙ୍କ ସଙ୍ଗେ କଥାବାର୍ତ୍ତା କରି, ଶେଷରେ କଣ ନା ଆସି ଅବତରଣୀୟ।

ଭଜା ଘର ଦେଉଳରେ ବସିଗଲେ । ମୁଁ ତେଣୁ ସମସ୍ତଙ୍କୁ କହୁଛି, ଏ ବାତାବରଣ ଠିକ୍ ହେଲା ନାହିଁ । ଏହା ଭିତରେ କେତେ କୁଟ କପଟ ଥିଲା ବୋଲି କିଏ ଜାଣିଥିଲା ? ନ ହେଲେ ଜାଣି ଶୁଣି କିଏ ଗୋଟାଏ ପଣ୍ଡିମା ଟେରେଣି ସଙ୍ଗେ ଆମର ଏପରି ଝିଅକୁ ବାନ୍ଧ ଦେଇଥାନ୍ତା ? ସେଥିଁ ଲୋକ ଦେଖା ଘଡ଼ି ବହୁରୂପୀ ପରି ବେଶ ବଦଳାଇ ଲୋକଙ୍କୁ ଠକାଏ ତାଠାରେ ବା ବିଶ୍ୱାସ କଣ ? ପଣ୍ଡିମରୁ କେତେ ବାଟ ଏଠା ଧୂକର ପାଇବାଲାଗି ଆସିଥିଲା ସେ ? ହଉ ଯେତେବେ ଆମେ ସମସ୍ତେ ଆଶୀର୍ବାଦ କରୁଛୁ, ତେମେ ଶରବାଳ ଜମ ମାଳୀଙ୍କର ବଶୀଭୂକର ହୋଇଥାଅ ।”

ବର ଝିଅଏ ଚୁପି ଚୁପି କହିଲା, “କାହିଁ ? ଏ ପର୍ଯ୍ୟନ୍ତ ଖାଉଦାଣୀଙ୍କଠାରୁଁ ତ ପଚିଶଆନା ଜଣ୍ଡି ମିଳିଲା ନାହିଁ । ନ ହେଲେ ପୁଣି ଅନ୍ୟ ସ୍ଥାନରେ ଚେଷ୍ଟା କରିବାକୁ ହେବ ତ ?”

ବର ମୁହଁରୁ କଥା ଶେଷ ନ ହେଉଣୁ କିଏ ଗୋଟିଏ ଆସି “ହେଇଟି ନିଅ ପଚିଶଆନା” କହି ବରର ପୃଷ୍ଠଦେଶରେ ଗୋଟିଏ ଢୁସିଷ୍ଠ ବଣଶଟଳିଆ ବାଧା ବସାଇ ଦେଲା ଏବଂ ପାଖେ ପାଖେ ହାସ୍ୟର କଲ୍ଲୋଳରେ ଘରଟି ଉଚ୍ଛୁଳି ଉଠିଲା ।

ବିବାହ କାର୍ଯ୍ୟ ଶେଷ ହୋଇଯିବା ପରେ ହେମ ମାଳୀକୁ କହିଲା, “କଲିକାଳିଆ ଝିଅକୁ ଆଉ ବିଶ୍ୱାସ ନାହିଁ ସତ । ମୁଁ ସେହିକୁ ଜାଣେ ୧୦ ଦିନ ଭିତରେ ଗୋଟାଏ କଣ୍ଟା ସୁନାର ଅଛି । ଆଖିରେ ଆଖିରେ ତମର ଏତେ କଥାବାର୍ତ୍ତା ହୋଇଗଲା, ମୋତେ

ଟିକାଏ ଜଣେଇଥିଲେ ମୁଁ କଣ ତମ ବରକୁ କୁଆଡ଼େ ନେଇ ଚଳାଇଥିଲି ? ଦମୟନ୍ତୀ ପରି ତେମେ କାହିଁ ତମର ଛଦ୍ମବେଶୀ ନଳକୁ ବରଣ କରି ନେଲ, ମୋତେ ସେସ ଯେଉଁଠା ଆଚମ୍ବିତ ଲାଗୁଛି !"

× . × ×

କଥାଟା ଘୁରିଆଡ଼େ ଘୁଷ୍ଟୁ ହୋଇଯିବା ପରେ ସ୍ୱଦୋତ ଆସି ଲକ୍ଷ୍ମୀଧରକୁ କହିଲା, "କି ହେ ଲକ୍ଷ୍ମନ ଜି ! ସେଇଥିଲାଗି ପରଦାରେ ଏତେ ସ୍ୱାଧୀନତାର ଝଣ୍ଡା ଖେଳ ଯାଉଥିଲ ନା ? କାହାଣୀରୁ ଜସ ଧର ଛୁଆଁ ଦେଇ ନ ଥିଲ; ଶେଷରେ କଣ ଦାଁ ଝଲକ ଯାଇ ଲୁଚ ଚାଲ ହୋଇ ପାଣିରେ ବେକଟି ଗଳାଇ ଦେଲ ? ମୁଁ ଜାଣେ, ସେ ସ୍ରୋତରେ ଦମ୍ଭ ଅଭିମାନ ଲୁଣ ପରି କୁଆଡ଼େ ଉଭିଯିବ । ଭାଗୀରଥୀ ତରଙ୍ଗରେ କେତେ ଐରାବତ ଭାସି ଯାଉଛନ୍ତି, ଦର୍ଶକ ଛନ୍ଦନର ବାଲବନ୍ଧ କ ସେଠାରେ ଯମୁନା ପରନ୍ତ ?"

ଲକ୍ଷ୍ମୀଧର କହିଲା, "ହଇ, ମୋର ଏଥିରେ କଣ ଅଛି ? ବଧିର ଅଦୃଷ୍ଟ ନିକଟରେ ମନୁଷ୍ୟ କ ତୁଚ୍ଛ !"

---

# ବିଡ଼ମ୍ବନା

ସେତେବେଳେ ମୋର ବୟସ ୨୧ ବର୍ଷ । ଏମ୍. ଏ. ପାଶ କରି ନୂତନ ଥାର୍ଡ଼ ଇୟରରେ ଯୋଗ ଦେଇଅଛୁ । ମାଧ୍ୱାଧର ମଧ୍ୟ ସେ ବର୍ଷ କଠିନ ଜ୍ୱରାକ୍ରାନ୍ତ ହୋଇ ପରୀକ୍ଷା ଦେଇପାରି ନ ଥିବାରୁ ଆମ୍ଭେମାନେ ଏକ ଶ୍ରେଣୀରେ ଅଧ୍ୟୟନ କରୁଅଛୁଁ । ଆମ୍ଭ ଗ୍ରାମର ସମସ୍ତ ନିରକ୍ଷର ଅଧିବାସୀଙ୍କ ମଧ୍ୟରେ ଗୋବରଗଦାରେ ପଦ୍ମ ଫୁଟିଲ ପରି କେବଳ ମୁଁ ଓ ମାଧ୍ୱାଧର । କଲେଜରେ ପ୍ରବେଶ ଲାଭ କଲା ଦିନଠାରୁ ଆମ୍ଭେମାନେ ନାନାବିଧ ଦେଶ-ହିତକର ଓ ଜନକଲ୍ୟାଣକର କାର୍ଯ୍ୟରେ ଯୋଗଦାନ କରୁଅଛୁଁ । ସ୍ତ୍ରୀଶିକ୍ଷା, ଜାତିଭେଦବାଦ, ବାଲ୍ୟବିବାହ, ପୌତ୍ତଳିକତା ପ୍ରଭୃତି ବିଷୟରେ ନାନା ପ୍ରକାର ନର୍ତ୍ତନ-କୁର୍ଦ୍ଦନ, ଆନ୍ଦୋଳନ-ଆଲୋଡ଼ନ ହୋଇ ଯାଇଅଛି । ସମାଜ ଓ ଦେଶର ଯାବତୀୟ ଅଭାବ, ଅସୁବିଧା ଦୂର କରିବା ଲାଗି ଆମ୍ଭେମାନେ ନିଜକୁ ସମ୍ପୂର୍ଣ୍ଣ ଦାୟୀ ମନେ କରୁଅଛୁଁ ଏବଂ ସେଥିଲାଗି ଦୃଢ଼ପ୍ରତିଜ୍ଞ ହୋଇଅଛୁଁ । ଦେଶରୁ ସବୁପ୍ରକାର କୁସଂସ୍କାର ବିରୁଦ୍ଧରେ ଯୁଦ୍ଧ ଘୋଷଣା କରିବାରେ ମୁଁ ଓ ମାଧ୍ୱାଧର ଧୁରନ୍ଧର । ଆମ୍ଭମାନଙ୍କ ଆବିର୍ଭାବରେ ଖୋର୍ଦ୍ଧା ଅଞ୍ଚଳରେ ରୀତିମତ ଚହଳ ପଡ଼ି ଯାଇଅଛି । ଆମ୍ଭମାନଙ୍କର ଶରବ୍ୟ ଭିତରେ ଜଣକୁ ଛାଡ଼ିଦେଲେ ଅନ୍ୟାନ୍ୟମାନେ ସ୍ୱୟଂପ୍ରତାଡ଼ିତ

ଦେଶରେ ଆମ୍ଭମାନଙ୍କ କାର୍ଯ୍ୟାବଳୀ ଦେଖୁ ଅଛନ୍ତି ଏବଂ ତାହାର ଆଲୋଚନା କରୁଅଛନ୍ତି ।

ଏପରି ସମୟରେ ମୋର ହଠାତ୍ ଏକ ଦାରୁଣ ଆତ୍ମ-ସଂଶୟ ଆସି ଉପସ୍ଥିତ । ଆମ ମେସ୍‌ରେ ପ୍ରତିଦିନ ସନ୍ଧ୍ୟାବେଳେ ଗୋଟିଏ ଶ୍ରେଷ୍ଠ ମଜଲିସ୍ ବୈଠକ ହୁଏ । ଆମ ଦଳର ପ୍ରାୟ ସମସ୍ତେ ସେଠାକୁ ଆସନ୍ତି ଏବଂ ସେଠାରେ ଚୁରୁଟ୍ ଧୂଆଁ ସହିତ ରାଜନୀତି, ସମାଜନୀତିଠାରୁ ଆରମ୍ଭ କରି ଶ୍ରେଷ୍ଠ ବସ୍ତୁ କୌଣସି ଆଲୋଚନା ବାଦ୍ ପଡ଼େ ନାହିଁ । ସେଦିନ ଆମର ଏକ ପ୍ରାତ୍ୟହିକ ମଜଲିସର ଅଧିବେଶନ ବେଶ୍ ଜମାଟ ଓ ଆଡ଼ମ୍ବରରେ ଚାଲିଥିଲା । ସନ୍ଧ୍ୟା ପରେ ମେଘାଡ଼ମ୍ବର ହୋଇ ବୃଷ୍ଟି ହେବାରୁ ବାହାରର 'ପିଲ'ମାନେ କେହି ବସାକୁ ଫେରିଯାଇ ପାରି ନାହାନ୍ତି । ଫଳରେ ଅନ୍ୟାନ୍ୟ ଦିନ ଅପେକ୍ଷା ଆଜି ଟିକିଏ ଜମାଟର ଘଟାଟା ବେଶି । ପିଆଲାକୁ ପିଆଲା ଚା ପରିବେଷଣ କରାହେଉଅଛି ଏବଂ ସିଗାରେଟ୍ ଧୂଆଁରେ ଘରଟି କୁଣ୍ଡଳାକାର ହୋଇ ଯାଉଅଛି । ପ୍ରଥମେ କିଛି ସମୟ ସଙ୍ଗୀତ ଚର୍ଚ୍ଚା ହେଲା ପରେ ବର୍ତ୍ତମାନ ନାନାବିଧ ଯୁକ୍ତି ତର୍କରେ ବୈଠକଟି ବେଶ୍ ସରଗରମ ହୋଇ ଉଠିଛି । ସମସ୍ତଙ୍କ ହୃଦୟ ଉତ୍ତେଜନାପୂର୍ଣ୍ଣ ଏବଂ ବଦନମଣ୍ଡଳ ଦୀପ୍ତିବ୍ୟଞ୍ଜକ । ନାନା କଥା ପରେ ମାଷ୍ଟର କହିଲେ, "ଆମ୍ଭେମାନେ କେବଳ ବଡ଼ ବଡ଼ କଥା କହି ମାତିଲେଣି ଏବଂ ସେଥିରେ ମଧ୍ୟ କଳ୍ପନା ଜଳ୍ପନା ମାତ୍ର ସାର ହେଉଅଛି । କିନ୍ତୁ କେତେଗୁଡ଼ିଏ କ୍ଷୁଦ୍ର ଅଥଚ ଅତ୍ୟାବଶ୍ୟକ ବିଷୟ ଯେ ଆମ୍ଭମାନଙ୍କ ଚକ୍ଷୁର ଅନ୍ତରାଳରେ ରହି

ଯାଉଅଛନ୍ତି ସେ ଆଡ଼କୁ କାହାର ଦୃଷ୍ଟି ନାହିଁ ।" ଆମ୍ଭମାନଙ୍କ ମଧ୍ୟରୁ ଜଣେ କହିଲ, "କେଉଁ ବିଷୟ କଥା କହୁଛ ?"

ମାଦ୍ଗୁ - ଏପରି କେତେ ବିଷୟ ଅଛି, ଯାହା ଅନ୍ୟ କାହାରି ଅପେକ୍ଷା ଆମ୍ଭମାନଙ୍କଦ୍ୱାରା ସୁବିଧାରୂପେ ସମାଧାନ ହୋଇ ପାରିବ କେ ଯେଉଁ ବିଷୟରେ ଆମ୍ଭେମାନେ ଯତ୍ନବାନ୍ ନ ହେଲେ ତାହା ସମାଧାନ ହେବା ଏକପ୍ରକାର ଅସମ୍ଭବ ।

ଗୋପାଳ କହିଲ—କଥାଟା କଣ ଖୋଲି କହୁ ନାହିଁ କାହିଁକି ?

ମାଦ୍ଗୁ—ଏଇ ଯେ ବଙ୍ଗଦେଶ ଠାରୁ ଆମ ଦେଶରେ ବର-ଶୁଳ୍କ ପ୍ରଥା କ୍ରମେ କ୍ରମେ ବିସ୍ତାର ଲାଭ କରୁଛି, ଏହାର ଉପାୟ କଣ କରୁଛ ? ଏହାଦ୍ୱାରା କେତେ କି ଅକଲ୍ୟାଣ ସାଧିତ ହେଉଛି, ଟିକିଏ ସୂକ୍ଷ୍ମ ଦୃଷ୍ଟିରେ ନ ଦେଖିଲେ ସହଜରେ ବୁଝାଯିବ ନାହିଁ । ଆଜି କାଲି ଯେ ପାଞ୍ଚ ଅକ୍ଷର ପଢ଼ିଲା, ସେ ବିବାହ ସମୟରେ ନିଜର ଯୋଗ୍ୟତା ଅନୁପାତରେ ଟଙ୍କା ଓ ଯୌତୁକର ଅଯଥା ଦାବି କରି ବସିଲା । ବରଂ ଯେଉଁମାନେ ଯେତିକି ଉଚ୍ଚଶିକ୍ଷିତ, ସେମାନଙ୍କ ମଧ୍ୟରେ ଏ ବ୍ୟାଧି ସେହି ପରିମାଣରେ ପ୍ରବଳତର । କନ୍ୟାକର୍ତ୍ତାଙ୍କ ପକ୍ଷରେ ଏହା ଯେ କି ଭୟଙ୍କର ଚିନ୍ତାର ବିଷୟ, ତାହା ଭୁକ୍ତଭୋଗୀ ନ ହେଲେ ବୁଝିବା କଠିନ । ଯାହାର ଦୁଇ ଚାରୋଟି କନ୍ୟା ଅଛନ୍ତି ତାହାର ତ ଦୁର୍ଗତିର ସୀମା ନାହିଁ । ଧନୀ ଲୋକଙ୍କର ତ ଏଥିରେ ସର୍ବସ୍ୱାନ୍ତ ହୋଇଯିବାର କଥା; ଦରିଦ୍ର ଲୋକର କଥା ବା କଣ

ଜନ୍ମିବା ! ଏଥିରେ ପିତା ଯେ ଗୋଟିଏ ନା ଗୋଟିଏ କନ୍ୟାକୁ ଗୋଟିଏ ଗୋଟିଏ ଦାରୁଣ ଅଭିଶାପର ଫଳ ବୋଲି ମନେ କରିବେ, ସେଥିରେ ବୈଚିତ୍ର୍ୟ କଣ ? ଏଥିଲାଗି ଶିକ୍ଷିତ ଯୁବକ ସମ୍ପ୍ରଦାୟ ସମ୍ପୂର୍ଣ୍ଣ ଦାୟୀ ଏବଂ ଯଦି ସେମାନଙ୍କର ସମାଜପ୍ରତି କିଛି କର୍ତ୍ତବ୍ୟ ଥାଏ, ତେବେ ଏ ବିଷବୃକ୍ଷକୁ ସମୂଳେ ଉତ୍ପାଟନ କରିବା ଅପେକ୍ଷା ବୋଧହୁଏ ଆଉ କିଛି ପବିତ୍ରତର କର୍ତ୍ତବ୍ୟ ନାହିଁ ।

ମୁଁ ଭାବିଲି ବାସ୍ତବରେ ଏ କୁପ୍ରଥା ଯେ କିପରି ଏତେ ଶୀଘ୍ର ଆମ ଦେଶରେ ବ୍ୟାପ୍ତ ହୋଇ ପଡ଼ିଲା, ବଡ଼ ଆଶ୍ଚର୍ଯ୍ୟର କଥା ! ଏତେବେଳେ ସୁଦ୍ଧା ବେଳ ଅଛି, ଦୃଢ଼ ଭାବରେ କାର୍ଯ୍ୟ ଆରମ୍ଭ କଲେ ଏଥିରୁ ଫଳ ହେବାର ଆଶା ।

ସାଧୁ— ଆରମ୍ଭ କରିବ କିଏ ? ସମସ୍ତେ ନିଜ ନିଜ ସ୍ୱାର୍ଥ ନେଇ ବ୍ୟସ୍ତ ! "ଅଖଣ୍ଡମଣ୍ଡଳାକାର"କୁ ଏତେଶ କରତଳ-ଆମଳକ-ବତ୍ ଲାଭ ହେଲେ କେତେ ଜଣ ପ୍ରତ୍ୟାଖ୍ୟାନ କରି ପାରନ୍ତି ?

ମୁଁ ଟିକିଏ ଉତ୍ତେଜିତ ସ୍ୱରରେ କହିଲି— ସ୍ୱାର୍ଥ କଣ ଏତେଦୂର ମନୁଷ୍ୟର ବିବେକ ଲୋପ କରି ଦେଇ ପାରେ ! ଏହି ସାମାନ୍ୟ ପ୍ରଲୋଭନ ଯଦି ଆମ୍ଭେମାନେ ଦମନ କରି ନ ପାରିବା, ତେବେ ବୃଥା ଜଗତର ଦୋହାଇ ଦେଇ ସ୍ୱାର୍ଥତ୍ୟାଗର ଦୁନ୍ଦୁଭି ବଜାଇବାର ଆବଶ୍ୟକତା କଣ ? ମୋ କଥା ମୁଁ କହୁଛି, ମୁଁ କେବେହେଁ ଏ ଘୃଣ୍ୟ କଳଙ୍କରେ ନିଜକୁ କଳଙ୍କିତ କରିବି ନାହିଁ, ଏ ମୋର ଦୃଢ଼ ପ୍ରତିଜ୍ଞା; ବରଂ କୌଣସି ଦରିଦ୍ର କନ୍ୟାକର୍ତ୍ତାଙ୍କର ଦୁଃଖୋପନୋଦନ କରି ପାରିଲେ ନିଜକୁ କୃତାର୍ଥ ମନେକରିବି ।

ଗୋପାଳ ପ୍ରବୃତ୍ତିରେ ପ୍ରତ୍ୟେକ ଶିକ୍ଷିତ ଯୁବକ ଏହାପରି ସଙ୍କଳ୍ପ କରି ଏହାର ମୂଳ ନ ମାରିଲେ ଶେଷରେ ଏହାକୁ ଦମନ କରିବା ଦୁଃସାଧ୍ୟ ହୋଇ ଉଠିବ ଏବଂ ଘରେ ଘରେ ଏହାର ବିଷମୟ ଫଳ ଦେଖାଦେବ ।

ମାୟା—ଦେଖା ଦେଲଣି ନା ଦେବ ? ଏଇ ତ, ଗୋପୀନାଥପୁରର ଜଣେ କରଣ ଭଦ୍ରଲୋକଙ୍କର ଗୋଟିଏ ସପ୍ତଦଶ-ବର୍ଷୀୟା କନ୍ୟା କେବଳ ଏହି କାରଣରୁ ଅନୂଢ଼ା ରହିଅଛି । ପୂର୍ବବର୍ଷ କାଳ ନାନା ସ୍ଥାନରେ ଅନୁସନ୍ଧାନ କରି କରି ଏପର୍ଯ୍ୟନ୍ତ ମୁଖା ବରଟିଏ ଯୋଗାଡ଼ ହୋଇପାରିଲା ନାହିଁ । ସେମାନେ ବେଶ୍ କୁଳୀନ ଏବଂ ଘରଟା ମଧ୍ୟ ବଡ଼ ଖାନ୍‌ଦାନ୍ ଥିଲା । କନ୍ୟାର ପିତାଙ୍କ ମୃତ୍ୟୁ ପରେ ଯାହା କିଛି ପୈତୃକ ସମ୍ପତ୍ତି ଥିଲା, ତାହା ମଧ୍ୟ ଅଭିଭାବକଙ୍କ ତତ୍ତ୍ୱାବଧାନ ଅଭାବରୁ ଅସ୍ତବ୍ୟସ୍ତ ହୋଇ ପଡ଼ିଛି । ମାତାଙ୍କର ଏକାନ୍ତ ଇଚ୍ଛା ଯେ, କନ୍ୟାଟି ଯେପରି ଗୋଟିଏ ଶିକ୍ଷିତ ପାତ୍ର ହାତରେ ପଡ଼େ । ଏକମାତ୍ର ସନ୍ତାନ ଥିବାରୁ ସେ ପିତାମାତାଙ୍କର ବହୁ ସ୍ନେହଯତ୍ନରେ ପାଳିତା ହୋଇଥିଲା । ତାହା ଛଡ଼ା, ପିଲାଟି ଯେପରି ଶିକ୍ଷିତା ସେଥିରେ କେଉଁ ପାଷାଣ ହୃଦୟ ତାକୁ ଗୋଟାଏ ଜ୍ଞାନଶୂନ୍ୟ ମୂର୍ଖ ହାତରେ ଅର୍ପଣ କରି ନିଶ୍ଚିନ୍ତ ରହିବ ? କିନ୍ତୁ ଉପାୟ କଣ ? ଯାହା ପାଖକୁ ଗଲେ ସେହି ଏକ କଥା—"ଦେବା ନେବା କଥାଟା ଛିଣ୍ଡାଅ ।" କିନ୍ତୁ ବର୍ତ୍ତମାନ ତାଙ୍କ ଘରର ଯେପରି ଅବସ୍ଥା, ସେଥିରେ କୌଣସିମତେ ହାର୍ଯ୍ୟଟି ଉଠାଇବା ଦୁଷ୍କର । ପିଲାଟିର ଦୋଷ ମଧ୍ୟରେ ଟିକିଏ ଶ୍ୟାମଳବର୍ଣ୍ଣ, ନ ହେଲେ ଏପରି ଗୁଣବତୀ ଚରିତ୍ରବତୀ ଖୁବ୍ କମ

ଲୋକଙ୍କ ଭାଗ୍ୟରେ ଘଟିଥାଏ । କିନ୍ତୁ ସମାଜ ଦୋଷକୁ ତାକୁ ଏପରି ନିର୍ଯ୍ୟାତନ ଭୋଗ କରିବାକୁ ପଡ଼ୁଛି । ସେ ଦିନ ତାଙ୍କ ମାତା ଗୋଟିଏ ପାତ୍ର ଅନୁସନ୍ଧାନ କରିବାକୁ ମୋତେ ଯେପରି ଅଶ୍ରୁପୂର୍ଣ୍ଣ ନୟନରେ ଆକୁଳ ସ୍ୱରରେ କହିଲେ, ଯେଥିରେ ମୋର କଠୋର ହୃଦୟ ମଧ୍ୟ ଦ୍ରବୀଭୂତ ହୋଇଗଲା । ଯମାର ବିବାହ ହୋଇ ନ ଥିଲେ, ସେହି ମୁହୂର୍ତ୍ତରେ ସମସ୍ତ ବିଷୟ ସ୍ଥିର ହୋଇ ଯାଇଥାନ୍ତା ।

ମାୟାଧରର କରୁଣ କାହାଣୀ ଶୁଣି ମୋର ନେତ୍ର ବାଷ୍ପାକୁଳ ହୋଇ ଆସିଲା । ତା ପର୍ଯ୍ୟନ୍ତ 'ଦୋହା'ର ଧୂଆଁ ମୋ ମସ୍ତିଷ୍କରେ ପୂର୍ଣ୍ଣମାତ୍ରାରେ ବର୍ତ୍ତମାନ । ବିଶେଷତଃ ନାନା ଯୁକ୍ତିତର୍କରେ ହୃଦୟ ମନ ତୀବ୍ର ଉତ୍ତେଜନାରେ ପୂର୍ଣ୍ଣ । ସୁତରାଂ ମୁଁ ଏ ପ୍ରଲୋଭନ ସମ୍ବରଣ କରି ନ ପାରି କହିଲି, "ସେମାନଙ୍କର ଯଦି କିଛି ଆପତ୍ତି ନ ଥାଏ, ତେବେ ମୁଁ ଏ ବିବାହ ପାଇଁ ସମ୍ପୂର୍ଣ୍ଣ ପ୍ରସ୍ତୁତ ।" ମୋର ହୃଦୟ ଆବେଗରେ ପୂର୍ଣ୍ଣ ହୋଇ ଆସିଲା । ମୁଁ ଆଉ କିଛି କହି ନ ପାରି ନୀରବ ରହିଲି । ମୋ କଥା ଶୁଣି କ୍ଷଣକାଳ ସମସ୍ତେ ନୀରବ ହୋଇଗଲେ । ଶେଷରେ ନୀରବତା ଭଙ୍ଗ କରି ମାୟାଧର କମ୍ପିତ କଣ୍ଠରେ କହିଲା, "ଭାଇ ନୟନ, ଏ ସୌହାର୍ଦ୍ଦ୍ୟପୂର୍ଣ୍ଣବାକ୍ୟ ତୁମ୍ଭର ସମ୍ପୂର୍ଣ୍ଣ ଉପଯୁକ୍ତ । କିନ୍ତୁ କଥାର ଗୁରୁତ୍ୱ ତୁମେ ଭଲ କରି ଉପଲବ୍ଧି କରି ପାରି ନାହିଁ । ନ ହେଲେ ଏପରି ଗୁରୁତ୍ୱ କାର୍ଯ୍ୟର ମୀମାଂସା ଏତେ ଶୀଘ୍ର କରି ନ ଥାନ୍ତ । ତୁମେ ଜଣେ ଦେଶମାନ୍ୟ ଜମିଦାରଙ୍କର ଏକମାତ୍ର ଉତ୍ତରାଧିକାରୀ । ତୁମ୍ଭେ ନିଜେ ରେଭେନ୍ୟୁ

କଲେଜର ଗୋଟିଏ ଉଜ୍ଜ୍ୱଳ ରତ୍ନ । ତେବେ ତ ଏକାଳ ଜମିଦାର ପୁତ୍ରଙ୍କୁ ଜାମାତାରୂପେ ଲାଭ କରିବାକୁ ଲାଳାୟିତ । ବିଶେଷତଃ ତୁମ ପିତାଙ୍କର ମତାମତ ତ ତୁମେ ଭଲ କରି ଜାଣ । ଏପରି ସ୍ଥଳରେ ଏପରି ଅପମାନ କାର୍ଯ୍ୟରେ ହସ୍ତକ୍ଷେପ କରିବା ତୁମର ଅନୁଚିତ । ତାହା ଛଡ଼ା ଏପରି ସାମୟିକ ଉତ୍ତେଜନାର ମଧ୍ୟ ସଂଯମ ଅଛି । କିଛିକ୍ଷଣ ପରେ ତୁମେ ନିଜେ ଏ ପ୍ରସ୍ତାବର ଅସାରତା ଭଲ କରି ବୁଝିପାରିବ ।”

ଗୋପାଳ—ଠିକ୍ କଥା କହୁଛ, ଆମ୍ଭମାନଙ୍କ କଥା ଟିକିଏ ଅଲଗା, କିନ୍ତୁ ବିପନ୍ନ କ୍ଷେତ୍ରରେ ଏ କାର୍ଯ୍ୟ ଏକାନ୍ତକାର ଉପଯୁକ୍ତ ଭାବିଲେ ଚଳେ ।

“ଥାଉ ସେ କଥା. ଯାହା ହେବାର ତାହା ହେବ”, ଏହି କଥା କହି ମୁଁ ସେ ବନ୍ଧୁ ବାହାରି ଆସିଲି ।

ସେହିଦିନ ସକାଳେ ସଭା-ଭଙ୍ଗ ହେଲା ।

( ୨ )

ମୋର ଏ “ସମ୍ମତି” କଥା କ୍ରମେ ପିତାଙ୍କ କାନକୁ ଗଲା । ସେ ଏ କଥା ଶୁଣି ହସି ଉଡ଼ାଇ ଦେଲେ ଏବଂ ଆଜିକାଲିକା ଇଂରାଜୀ ପାଠୁଆ ପିଲାଙ୍କ ଅଦ୍ଭୁତ ଖିଆଲ ସମ୍ବନ୍ଧରେ ଦୀର୍ଘ ସମାଲୋଚନା କରିବାକୁ ମଧ୍ୟ ଭୁଲିଲେ ନାହିଁ । ଯାହା ହେଉ ଏ କଥାକୁ ସେ ଆଦୌ ବିବେଚନାର ଯୋଗ୍ୟ ବୋଲି ମନେ କଲେ ନାହିଁ । ମୁଁ ଏହା ଶୁଣି ବଡ଼ ମର୍ମାହତ ହେଲି, କିନ୍ତୁ

ହତାଶ ହେଲି ନାହିଁ । ଯେତେକ ବାଧା ବିଘ୍ନ ସମ୍ମୁଖରେ ଉପସ୍ଥିତ ହେଉଥାଏ, ସେତିକି ମୋର ସଙ୍କଳ୍ପ ସେତେ ଦୃଢ଼ତର ହେଉଥାଏ । କାର୍ଯ୍ୟସିଦ୍ଧିର ନାନା କୌଶଳ ଉଦ୍ଭାବନ କରିବାକୁ ଲାଗିଲି, କିନ୍ତୁ କୌଣସିଟି ଯେତେ ଫଳପ୍ରଦ ହେବାର ବୋଧ ହେଲା ନାହିଁ । ଏହି କଥାହିଁ ମୋର ପ୍ରଧାନ ଚିନ୍ତାର ବିଷୟ ହୋଇ ଉଠିଲା । କ୍ରମେ ଚନ୍ଦ୍ରମୁଖୀ ତାଙ୍କ ଶ୍ୱଶୁର ଘରକୁ ଫେରିବାକୁ ସମୟ ହେଲା । ଏହାପରେ ନାନା ଶଙ୍କା କଳ୍ପନାରେ କିଛି ଦିନ କଟିଗଲା । ଦିନେ ହଠାତ୍ ପିତାଙ୍କର କଠିନ ପୀଡ଼ାର ସମ୍ବାଦ ପାଇ ମୁଁ ଘରକୁ ଫେରିଗଲି । ଅନେକ ଡାକ୍ତର କବିରାଜ ନାନା ଚିକିତ୍ସା କଲେ, କିନ୍ତୁ ମୃତ୍ୟୁର ଆଦେଶ କେହି ବଦଳାଇ ପାରିଲେ ନାହିଁ । ମୋର ସଂସାରର ଜଞ୍ଜାଳ ଦେଇ ପିତା ଆମମାନଙ୍କ ହୃଦୟରେ ଦାରୁଣ ଆଘାତ ଦେଇ ସଂସାରବନ୍ଧନ କାଟି ଚାଲିଗଲେ ।

×　　×　　×　　×

ଏହାପରେ ଅନେକ ଦିନ ବିତିଗଲା । ସମୟର ପରିବର୍ତ୍ତନରେ ଆମମାନଙ୍କର ଶୋକର ବେଗ ଅନେକ ପରିମାଣରେ ମନ୍ଦୀଭୂତ ହୋଇଯାଇଛି । ଦିନେ ମାତା ପାତ୍ରୀ ନିର୍ବାଚନରେ ମୋର ବିବାହ କଥା ଉତ୍ଥାପନ କଲେ ଏବଂ ମୁଁ ମଧ୍ୟ ସୁଯୋଗ ଦେଖି ମୋର ବାଲ୍ୟସଖୀ ପାଝିଁଙ୍କ କଥା ତାଙ୍କ ଆଗରେ କହିଲି । ବୋଲିବା ବାହୁଲ୍ୟ ଯେ, ସେ ତାଙ୍କର ନୟନର ମଣି, ସଂସାରର ଏକମାତ୍ର ବନ୍ଧନ ମୋତେ ଏପରି ଗରିବ ଘରେ ବିବାହ ଦେବାକୁ ସମ୍ପୂର୍ଣ୍ଣ ଅସମ୍ମତା ହେଲେ । ଏଥିରେ ମୋର ଏକାନ୍ତ ଜିଦ୍ ଦେଖି ସେ ତାଙ୍କର ପ୍ରାଣୋପମ ପୁତ୍ରର ମନରେ ପଛିନେ କଷ୍ଟ ହେବ, ସେଥିପାଇଁ ଆଉ ବେଶି ଜିଦର

ଉଠିଲେ ନାହିଁ । କେଖରେ କହିଲେ, "ଯେତେବେ ମୁଁ ଝିଅକୁ ଆଗରେ ନ ଦେଖିବି କେବେହେଁ ବାହାଘର କରିବ ନାହିଁ ।" ଏ ଅନୁରୋଧ ମଧ୍ୟ ତାଙ୍କର ପୂର୍ଣ୍ଣ ହୋଇ ପାରିଲା ନାହିଁ । ମୁଁ କହିଲି, "ଯେତେ-ବେଳେ ଝିଅଟି ମୋ ପାଖରେ ଜଣାଇବାକୁ ହେବ, ତେବେ ଦେଖିଲେ କଣ ବା ନ ଦେଖିଲେ କଣ ?" ଶେଷରେ ଅବାଧରେ ମୋହର ପ୍ରସ୍ତାବ ଗୃହୀତ ହେଲା ଏବଂ ବିବାହର ଦିବସ ମଧ୍ୟ ସ୍ଥିର ହୋଇଗଲା ।

ମୋର ବହୁକାଳ-ପୋଷିତ ବାଞ୍ଛା ପୂର୍ଣ୍ଣ ହେବାର ଆଶାରେ ହୃଦୟ ଆନନ୍ଦରେ ନାଚି ଉଠିଲା । ଏଥର ଜଗତକୁ ତ୍ୟାଗର ଉଜ୍ଜ୍ୱଳ ଦୃଷ୍ଟାନ୍ତ ଦେଖାଇ ଦେବି । ଯେଉଁ ଦିନ ମୋହର ଦୃଢ଼ କର୍ତ୍ତବ୍ୟନିଷ୍ଠାରେ ଦେଶବାସୀଙ୍କୁ ସ୍ତମ୍ଭିତ କରାଇଦେବ । ଏ ନୂତନ ଆଦର୍ଶ ଶିକ୍ଷିତ ସମାଜରେ ଏକ ପ୍ରବଳ ଆନ୍ଦୋଳନର ସୂତ୍ରପାତ କରିଦେବ । ପ୍ରତ୍ୟେକ କନ୍ୟାକର୍ତ୍ତା ମୋତେ ଶୁଳ୍କ-ଦାନବ-ସଂହାରକାରୀ ଅବତାର ବୋଲି ଜ୍ଞାନ କରିବେ । ପ୍ରତ୍ୟେକ ସମ୍ବାଦପତ୍ରରେ ମୋର ନାମ ଉଚ୍ଚସ୍ୱରରେ ଘୋଷିତ ହେବ ଏବଂ ଦେଶବାସୀଙ୍କର ଏ ଅଭିନବ-ଜୟମାଳ୍ୟ କଣ୍ଠରେ ଧାରଣ କରି ଜୀବନ ସାର୍ଥକ କରିବି । ଏହିପରି ନାନା ସୁଖକଳ୍ପନାରେ ମୋର ହୃଦୟ ପୂର୍ଣ୍ଣ ହୋଇ ଆସିଲା । କ୍ଷଣକାଳ ପାଇଁ ମୁଁ ଜଗତର ଅସ୍ତିତ୍ୱ ବିସ୍ମୃତ ହୋଇଗଲି ।

( ୩ )

ଶୁଭଲଗ୍ନ ଶୁଭକ୍ଷଣରେ ମୋର ବିବାହ ହୋଇଗଲା । ସେତେ-ବେଳେ ପ୍ରଥମେ ମୋର କନ୍ୟା ଦର୍ଶନର ସୁଯୋଗ ଘଟିଲା,

ସେତେବେଳେ ସେ ଭୂମିରେ ଶାୟିତା । କନ୍ୟାର ଆପାଦ ମସ୍ତକ ବସ୍ତ୍ରରେ ଆବୃତ୍ତ, କେବଳ ଗୋଟିଏ ହସ୍ତ ବାହାରକୁ ଦେଖା ଯାଉଅଛି । ହା ଭଗବାନ ! ମୋ ଅଦୃଷ୍ଟରେ କଣ ଲେଖା ହୋଇଥିଲା ? ପାଠକ, କେଉଁ ବର୍ଣ୍ଣନା କରିବି, ସେ ବର୍ଣ୍ଣନାତୀତ କରିବ ? ଭାଷାର ସେ ଶକ୍ତି ନାହିଁ । ସ୍ୱପ୍ନମାନଙ୍କ ମଧ୍ୟରୁ କେହି ଅବଲୁପ୍ତ ନାଟକ ମଞ୍ଚି ଦେଖିଛ କି ? ବର୍ତ୍ତିଲି ଠିକ୍ ସେହିପରି । ଘୋର ଅମାବାସ୍ୟାର ସମସ୍ତ ଅନ୍ଧକାର ସେଠାରେ ପୁଞ୍ଜୀଭୂତ ହୋଇଅଛି । ମୁଁ ଆଉ ବେଶି କ୍ଷଣ ସେ ଆଡ଼କୁ ଅନାଇ ପାରିଲି ନାହିଁ । ମୋର ମସ୍ତକ ଘୂର୍ଣ୍ଣିତ ହୋଇ ଲାଗିଲା । ଚକ୍ଷୁଜ୍ୟୋତି ସ୍ତିମିତ ହୋଇଗଲା । କଣ କରିବି, କିଛି ବୁଦ୍ଧି ଦିଶିଲା ନାହିଁ । ଶେଷରେ କଣ ଭାବି କେଜାଣି ପ୍ରବଳ ବେଗରେ ସେ ଘରୁ ବାହାର ହୋଇ ପଡ଼ିଲି । ସେତେବେଳେ ରାତି ଦ୍ୱିପ୍ରହରରୁ ବହୁ ବଳି ଯାଇଅଛି । ନିଶି ସୁପ୍ତ ଚରାଚର ନିସ୍ତବ୍ଧ, ଗମ୍ଭୀର । ଉପରେ ଚନ୍ଦ୍ରଦେବ ନକ୍ଷତ୍ର ମଣ୍ଡଳୀ ମଧ୍ୟରେ ଏକ ବସନ୍ତ ସଭାର ଆୟୋଜନ କରି ବସିଅଛନ୍ତି । ମୋତେ ଦେଖି ସମସ୍ତେ ଯେପରି ବକ୍ର ଦୃଷ୍ଟିରେ ହସି ହସି ପରସ୍ପର ଉପରେ ଢଳି ପଡ଼ିଲେ । ଯେଉଁ ଜ୍ୟୋତ୍ସ୍ନାମୟୀ ରଜନୀର ଅତୁଳନୀୟ ସୌନ୍ଦର୍ଯ୍ୟ-ଲୀଳାପରେ ମୁଗ୍ଧ ହୋଇ ମୁଁ ଆତ୍ମବିସ୍ମୃତ ହୋଇ ପଡ଼ୁଥିଲି, ସେ ଆଜି ମୋ ପକ୍ଷରେ ଭବିତବ୍ୟ ପରି ଦୁର୍ବୋଧ୍ୟ, ଗୂଢ଼ ରହସ୍ୟମୟ । ଏହି ସମୟରେ ଗୋଟିଏ ନିଶାଚର ପକ୍ଷୀ ଯେପରି ମୋତେ ଉପହାସ କରି ମୋ ମୁଣ୍ଡ ଉପରେ ଦେଇ କେଁ କେଁ ଶବ୍ଦ କରି ଉଡ଼ିଗଲା । ମୁଁ ଆଉ ବେଶି କ୍ଷଣ ସେଠାରେ ରହି ପାରିଲି ନାହିଁ । ମୋର ପଡ଼ିବା ଘର ବାରଣ୍ଡାରେ

ହୋଇଅଛି । ମୁଁ ଏପର୍ଯ୍ୟନ୍ତ ନିଜକୁ ଚିହ୍ନି ପାରି ନ ଥିଲି; ଅନ୍ତର୍ନିହିତ ଦୁର୍ବଳତାର ପରିଚୟ ପାଇପାରି ନ ଥିଲି । ଏଥିପରେ ନାନା ଭାବନା ମନରେ ଉଦୟ ହେବାକୁ ଲାଗିଲା । ନିଦ୍ରାର କଠିନ ପାଶ ମଧ୍ୟ ସେପରି ମୋର ସ୍ନାୟୁଦୌର୍ବଲ୍ୟ କରି ଆସିଲା । ଅନନ୍ତର ବୃଶ୍ଚିକ ଦଂଶନ ଭୁଲିଯିବା ଲାଗି ନିଦ୍ରାଦେବୀଙ୍କର ଶାନ୍ତିମୟ କ୍ରୋଡ଼ରେ ଥରକେ ଥର ଆଶ୍ରୟ ଖୋଜିଲି, କିନ୍ତୁ ସମସ୍ତ ଚେଷ୍ଟା ବ୍ୟର୍ଥ ହେଲା । ପ୍ରଭାତର କିଛି ପୂର୍ବରୁ ଟିକିଏ ତନ୍ଦ୍ରା ଆସିଲା । ସେ ପୁଣି ନାନା ଦୁଃସ୍ୱପ୍ନପୂର୍ଣ୍ଣ । ମୁଁ ଯେତେବେଳେ ଶଯ୍ୟା ତ୍ୟାଗ କଲି, ସେତେବେଳେ ପୂର୍ବଦିଗ ଏକ ଗୋଲାପୀ ଆଭାରେ ରଞ୍ଜିତ ହୋଇ ଯାଇଅଛି, ବୃକ୍ଷ ଶାଖାରୁ ପକ୍ଷିମାନଙ୍କ କଳକଣ୍ଠରେ ଚତୁର୍ଦ୍ଦିଗ ମୁଖରିତ ହୋଇ ଉଠିଅଛି, ପ୍ରଭାତର ଶୀତଳ ସମୀରଣ ଘରେ ଘରେ ପରିମଳ ବିତରଣ କରୁଅଛି ଏବଂ କର୍ମମୟ ଜଗତରେ ଏକ ଅଭିନବ ଆନନ୍ଦ ଓ ଆଶୀର୍ବାଦର ଧାରା ଝରି ପଡ଼ୁଅଛି । କିନ୍ତୁ କାହାରି ସହିତ ମୋର ହୃଦୟର ମେଳ ନାହିଁ । ଏକ ନବଯୁଗ ସନ୍ଧିକ୍ଷଣରେ ମୋର ଅନ୍ତର ସଂକ୍ଷୁବ୍ଧ ହୋଇ ଉଠୁଅଛି । ଗ୍ରାମର ପଶୁ-ପକ୍ଷୀ, ବୃକ୍ଷ-ଲତା, କାହାରି ମୋ ପ୍ରତି ସହାନୁଭୂତି ନାହିଁ । ସମସ୍ତେ ଯେପରି ଅପରିଚିତ ପରି ମୋ ଆଡ଼କୁ ଚାହିଁ ଅଛନ୍ତି । ସକାଳର ଉଷ୍ମା ମୋ ପକ୍ଷରେ ଅସହ୍ୟ ହୋଇ ଉଠିଲା । ସେହିଦିନ ୧୨ଟା ଗାଡ଼ିରେ କେତୋଟିଏ ଅତ୍ୟାବଶ୍ୟକ କାର୍ଯ୍ୟର ଛଳନା କରି ମୁଁ କଟକ ଯାତ୍ରା କଲି ।

( ୪ )

ଯାହା ମନରେ ଅଶାନ୍ତି ପ୍ରବେଶ କରିଅଛି, ବାହାରର କୌଣସି ବସ୍ତୁ ତାକୁ ଶାନ୍ତ କରି ନ ପାରେ । ମନେ କରିଥିଲି,

ଗତବର୍ଷର କର୍ମସ୍ରୋତରେ ଶରୀର ଅଧ୍ୟୟନ ଓ ବନ୍ଧୁମାନଙ୍କ ସହିତ ଆମୋଦ-ଆହ୍ଲାଦ ଦ୍ୱାରା ଏ ଯନ୍ତ୍ରଣାର ଅବସାନ ହେବ; କିନ୍ତୁ ହୃଦୟର ବନ୍ଧୁତ୍ୱାକାଶରେ ସମସ୍ତ ବିଷମୟ ହୋଇ ଉଠିଲା । କେତେ ଥର ସଙ୍କଳ୍ପ କଲି, ମାତୃଭୂମିର ପ୍ରକୃତ ସେବକ କେତେକଜଣ ଅନ୍ତରଙ୍ଗ ବନ୍ଧୁଙ୍କ ଆଗରେ ମୋର ଦୁଃଖକାହାଣୀ କହି ହୃଦୟର ଭାର କିଛିଏ ଲଘୁ କରିବି । କିନ୍ତୁ ଦୁର୍ବଳ ମନ ଏଥିରେ ବାଧାଚରଣ କଲା । ମିଥ୍ୟା ଅଭିମାନର ବଶବର୍ତ୍ତୀ ହୋଇ ଏ ହୀନତା ସ୍ୱୀକାର କରିବାକୁ ଅତ୍ୟନ୍ତ କଷ୍ଟକର 'ମନେ ହେଲା । ଯେଉଁମାନେ ମୋର ମନର ଦମ୍ଭ ଓ ସାହସ ଦେଖି ବିସ୍ମିତ ହେଉଥିଲେ, ସେମାନେ ମୋର ଏ ଦୁର୍ବଳତା ଦେଖି କଣ ମନେ କରିବେ ? ଯେଉଁମାନେ ମୋହର ଉଦାର କଥା ଶୁଣି ମୋତେ ଜଣେ ତ୍ୟାଗୀ ବୀର ବୋଲି ଭାବୁଥିଲେ, ସେମାନେ ବର୍ତ୍ତମାନ ମୋତେ କାପୁରୁଷ ବୋଲି ଘୃଣା କରିବେ, ଏକଥା ମୋର ସହ୍ୟ ହେଲା ନାହିଁ ।

ଏତେବେଳେ ମଧ୍ୟ ଅନେକ ଲୋକ ମୋର ପ୍ରଶଂସା କରନ୍ତି, ମୋର 'ସ୍ୱାର୍ଥତ୍ୟାଗ'ର ସୁଖ୍ୟାତି କରନ୍ତି । ଧିକ୍ ମୋତେ ! ଧିକ୍ ମୋର 'ସ୍ୱାର୍ଥତ୍ୟାଗ'କୁ ! ସେ ପ୍ରଶଂସା ଶୁଣି ମୋର ହୃଦୟରେ ଶେଲବିଦ୍ଧ ହୋଇଯାଏ । ଭିତରର ଏ ଅନ୍ତର୍ଦାହ କଥା ବୁଝିବ କିଏ ? ମୋର ନିଜ ହାତଗଢ଼ା ଦୁର୍ଭାଗ୍ୟର କଥା କାହାକୁ କହିବି ? କଥାରେ ଅଛି, "ଆର୍ କଥାକୁ ଇଲାଦ୍ କଥା !"

ମହାତ୍ମାଙ୍କଠାରୁ ପ୍ରାୟ ଛଅ ସାତଦିନରେ ପତ୍ର ପାଏଁ । ପ୍ରତି ପତ୍ରର ମର୍ମ ପ୍ରାୟ ଏହିପରି—"କେବେ ଆସିବୁ ? କେବେ ଛୁଟି

ହେବ ? ମୋତେ ଏ ବନ୍ଧମୂଳର ଆଉ କଣ ଭଲଲାଗ, ଛଟପଟ ହେଇ ଯାଉଛି ? ଭାବୁଥିଲି, ଜେଜା ବାହାଘର ପରେ ତୋ ସଂସାରବାନ୍ଧ ତୋତେ ସମ୍ପି ଦେଇ ମୁଁ ଟିକିଏ ନିଶ୍ଚିନ୍ତ ମନରେ ଈଶ୍ୱରଙ୍କ ନାମ ନେବି । କିନ୍ତୁ ଜେଜା ଭଳି ଗଙ୍ଗ ଦେଖି ମୋ ଆଖିରୁ ଲୁହ ଶୁଖିଲ ନାହିଁ । ପରବନ୍ତୁ ହିଂସା ଆଦି ଅନେକ ଦେଖିଲେ ସୁଖ ପାଇଲ ନାହିଁ ସ୍ୱାମୀ ସ୍ତ୍ରୀ ବୈକର ସବୁ । ସେ ସୁଖ ସାହା ଜପାରେ ନାହିଁ, ମୁଁ ତାକୁ କ ପ୍ରବୋଧ ଦେବି ? ଆଜ ପାଠ ନ ପଢ଼ିଲେ ଜଣ ହେବ ନାହିଁ । ଛନମାନଙ୍କ ସୁଖରେ ନଜଜା ଲଗି ତୋ ବାପା ସନ୍ଥେସ୍ତ୍ର, ସମ୍ଭାଳ ପାଇଅନ୍ତି । ତାକୁ ଧୋଇ ଶୁଖେଇ ଖାଇଲେ ସଣକ ନାହିଁ । ତାକୁ ଜଗାରଖା ନ କଲେ ବାର ଭୂତ ଖାଇପିବେ । ମୁଁ ତ ଆଜ ଅଛି, କାଲି ନାହିଁ । ମୁଁ ଆଜି ଏ ଜଞ୍ଜାଳରେ କେତେ ଦିନ ଛନ ହୋଇ ପଡ଼ିଥିବି ? ମୋ ପାଇଁକି ତୋ ମନରେ କଅଣ ଟିକିଏ ଦୟା ଉପୁଜୁ ନାହିଁ ? ଇତ୍ୟାଦି, ଇତ୍ୟାଦି ।"

ମୁଁ ପ୍ରତି ଦିନ ମନୋଯୋଗ କରି ପଢ଼େ । ସ୍ୱତ ଦୁଃଖରୁ ମାତାଙ୍କର ଅଶାନ୍ତି ଓ ଅସନ୍ତୋଷର କାରଣ ବୁଝିପାରେଁ, କଳ୍ପନା-କର୍ଣ୍ଣରେ ଗୋଟିଏ ଅନାଥା ବାଳିକାର ଗଭୀର ଦୁଃଖ ଶୁଣ ଶୁଣିପାରେଁ, ନିଜକୁ ଏ ସମସ୍ତ ଅନର୍ଥର ମୂଳ ବୋଲି ଜାଣି ଧିକ୍କାର ଦିଏ । କିନ୍ତୁ ଯେତେବେଳେ ସେ ନିର୍ଜନ କକ୍ଷର ସେ ଶାନ୍ତନମ୍ର ମୂର୍ତ୍ତି ଓ ଦଳାକଜ୍ଜ୍ୱଳବୋଳା ଚକ୍ଷୁ ମନେ ପଡ଼େ, ଯେତେବେଳେ ଭାବେଁ, ସେହି ନବଘନଶ୍ୟାମରୂପିଣୀକୁ ବକ୍ଷରେ ଧାରଣ କର ସାରା ଜୀବନଟା କଟାଇବାକୁ ହେବ, ଯେତେବେଳେ ହୃଦୟ

ଜୀବିତ ଥାଏ, ସମସ୍ତ ସେତେବେଳେ ଲୁପ୍ତ ହୋଇଯାଏ । ସେମାନଙ୍କ ପଥର କଠିନ ଭାଷା ? ସେମାନଙ୍କ କଦର୍ଥନା ମୁଁ ଭୁଲିଯାଏଁ ।

ସମୟ କାହାକୁ ଉପେକ୍ଷା କରେ ନାହିଁ । ଦୁଃଖୀର ଦେହ ଦୁଃଖରେ ନଜଳୁ, ସମସ୍ତଙ୍କ ସମୟ ଗୁଜୁରି ଯାଏ । ମୋର ଏ ଦୁଃଖମୟ ଜୀବନର ୨୮ ମାସ ଏହିପରି କଟିଗଲା । ପୂଜାଛୁଟି ଆଉ ଅଳ୍ପ ଦିନ ଅଛି । ସୁନ୍ଦର ପୁଷ୍ପ ମଣ୍ଡନରେ ଅଳଙ୍କୃତ ହୋଇ ମୋର ସଙ୍ଗୀମାନଙ୍କ ହୃଦୟ ଆନନ୍ଦରେ ନାଚି ଉଠୁଅଛି । ବିଦେଶର କ୍ଷୁଦ୍ର, ନୀରସ ଜୀବନରୁ ଆତ୍ମୀୟ ସ୍ୱଜନମାନଙ୍କ ଆଦର ସ୍ନେହରେ କିଛି ଦିନ ସୁଧାମିଶ୍ରିତ କରି ଆସିବା ଲାଗି ସମସ୍ତେ ବ୍ୟାକୁଳ ହୋଇ ଉଠୁଅଛନ୍ତି । କିନ୍ତୁ ଦୁର୍ଭାଗ୍ୟ ମୁଁ—ମୋର ଆଶ୍ରୟ କେଉଁଠାରେ ? ଛୁଟିରେ ଶୀଘ୍ର ଘରକୁ ଫେରିବା ଲାଗି ମାତାଙ୍କଠାରୁ କେତେଥର ପତ୍ର ପାଇଲିଣି । ସେମାନେ ବୃଦ୍ଧ ଚକ୍ଷୁ ପଛପ୍ରୁ ଗବାକ୍ଷରେ ମୋତେ ଅନାଇ ବସିଥିବେ । ଦୀର୍ଘ ବିରହ-ଯନ୍ତ୍ରଣା ଏକ ମୁହୂର୍ତ୍ତରେ ଭୁଲିଯିବା ଆଶାରେ ମନକୁ ସାନ୍ତ୍ୱନା ଦେଉଥିବେ । କିନ୍ତୁ ମୁଁ କଣ କରିବି ? ଜାଣି ଶୁଣି କପରି ଅଗ୍ନିକୁଣ୍ଡରେ ଝାସ ଦେବି ? ଯେଉଁ ଜନ୍ମ ଭୂଦେଶରେ ଟିକିଏ ସହ୍ୟ ହୋଇ ଆସୁଅଛି, ଘରକୁ ଗଲେ ପୁନର୍ବାର ସେ ଦୁଃଖସିନ୍ଧୁ ତ ଜାଗ୍ରତ ହୋଇ ଉଠିବ ! ନା, ନା, ବୃଥା କାହିଁକି ନିଜ ଦୁଃଖକୁ ବିଦୂଷଣରେ ସଂଗ୍ରାମ କରିବି ?

ପରୀକ୍ଷା ଆଉ ଅଳ୍ପଦିନ ବାକି, ଘରକୁ ଗଲେ ଆଉ ପଢ଼ାପଢ଼ି ହୋଇପାରିବ ନାହିଁ, ଜାଣିଶୁଣି ଗୋଟାଏ ବର୍ଷ ନଷ୍ଟ

କରିବାକୁ ଦେବ । ଏହିପରି ନାନା ଛଳନା ଦେଖାଇ ଉପରୁ ଖଣ୍ଡେ ଶାଢ଼ି ପକାଇ ଦେଇ ମୁଁ କିଛିକ୍ଷଣ ନିସ୍ତବ୍ଧ ରହିଲି ।

କଲେଜ ବନ୍ଦ ହୋଇଗଲା । ନାନା ସୁଖକଳ୍ପନା କରି ଉତ୍ଫୁଲ୍ଲ ହୃଦୟରେ ହସି ହସି କେଏ ଷ୍ଟେସନ ପାଖକୁ, କେଏ ଷ୍ଟିମର ଘାଟକୁ, କେଏ ନଗର ଗଳିକୁ ଧାବମାନ ହେଲେ । କିନ୍ତୁ ମୁଁ—ନିଷ୍ଠୁର ମୁଁ—ହୃଦୟହୀନ ମୁଁ—ଶୂନ୍ୟ ଦୃଷ୍ଟିରେ ଏ ସମସ୍ତ ଦୃଶ୍ୟ ଦେଖି ଅଟଳ ଅଚଳ ରହିଲି ।

( ୫ )

ଛୁଟିର ପ୍ରାୟ ୧୦।୧୨ ଦିନ ଅତୀତ ହୋଇଗଲାଣି । ଦିନେ ସନ୍ଧ୍ୟାବେଳେ ଝରକା ବନ୍ଧ ଧାରେ ବସି ମୁଁ ଗଙ୍ଗାର ଶୋଭାମଗ୍ନ । ସ୍ରୋତର ବର୍ଦ୍ଧମାନ ବେଗ ଆଡ଼କୁ ମୋର ମନ ନାହିଁ । କେବଳ ବନ୍ଧକୁ ଏକଦୃଷ୍ଟିରେ ଚାହିଁ ମୁଁ ନାନାକଥା ଭାବୁଛି । ଏପରି ସମୟରେ ଟେଲିଗ୍ରାଫ ପିଅନ ଆସି ହାତରେ ଖଣ୍ଡିଏ ଟେଲିଗ୍ରାମ୍ ଦେଲା । ମୋର ବକ୍ଷସ୍ଥଳ ଧଡ଼ଧଡ଼ ହେବାକୁ ଲାଗିଲା । ମୁଁ କମ୍ପିତ ହସ୍ତରେ ଲଫାପାଖଣ୍ଡି ଖୋଲିଲି । ଟେଲିଗ୍ରାମର ମର୍ମ ଏହି—"ସୁଶୀଳା ଭାରି ବେମାର, ଅବସ୍ଥା ଆଶଙ୍କାଜନକ, ଶୀଘ୍ର ଆସ ।" କାଗଜଖଣ୍ଡି ଧରି ଅନେକକ୍ଷଣ ଶୂନ୍ୟପ୍ରାଣରେ ତାହାରିକୁ ଅନାଇ ରହିଲି । ସମସ୍ତ ଚିନ୍ତାସ୍ରୋତ ଯେପରି ହଠାତ୍ ବାଧା ପାଇ ସ୍ଥଗିତ ହୋଇଗଲା । ଥରେ ଭାବିଲି, ମୋଠାରୁ ବଳି ସଂସାରରେ ନିର୍ଦ୍ଦୟ କିଏ ଅଛି ? ଯାହାକୁ ଏତେ ଶ୍ରଦ୍ଧା ଏତେ ଆଦରରେ କଣ୍ଠରେ ଧାରଣ କରିବ ବୋଲି ଘରକୁ ଆଣିଥିଲି, ତାକୁ ଏତେ

ଈଶ୍ୱର ଚରଣରେ ନିବେଦନ କରିଦେଲି ! ଜନ୍ମକାଳରୁ ଭଲ କରି ଅଭିଶପ୍ତ ନ ହୋଇଥିଲେ ଅପର ଭଦ୍ରକରଣର କୋମଳ ସ୍ପର୍ଶ ଲାଭ କରି ନ ପାରେ, ଦୁଃଖକଷ୍ଟ ଝଞ୍ଜାବାତରେ ଅକାଳରେ ଝଡ଼ି ପଡ଼ିଲି ! ଦୁଃଖିନୀ ମାତୃ ଠାକୁରାଣୀଙ୍କର ସଦାପ୍ରକାଶିତ କରୁଣ ପ୍ରାର୍ଥନା ମନେ ପଡ଼ୁଛି—"ବାବା, ମୋର ଦୁଃଖୀଧନକୁ ତମ ହାତରେ ସମର୍ପଣ କରିଦେଲି, ତାର ଯେମିତି କିଛି ଅଯତ୍ନ ନ ହୁଏ।" ଆଜି ସେହିକ୍ଷଣ ଭୁଲିପାରିଲି ନାହିଁ ।

ସେଦିନ ରାତି ୨ଟା ସମୟରେ ହସ୍ପିଟାଲ ଫାଟକରେ ପହଞ୍ଚିଲି । ଘରକୁ ଯାଇ ଦେଖିଲି, ବୈଠକଖାନାରେ ଅନେକ ଲୋକ ଜୁଟିଛନ୍ତି, ସମସ୍ତଙ୍କ ମୁହଁରେ ଗୋଟାଏ ବିଷାଦକାଳିମା ଛାଇ ଯାଇଅଛି । ମୁଁ କାହାରିକୁ କିଛି ନ କହି ନୀରବରେ ଉପରେ ଥିବା ଘରକୁ ଚାଲିଯାଇ ଦେଖିଲି, ମାତା ରୋଗିଣୀ ପାର୍ଶ୍ୱରେ ବସି ଆକୁଳ ଦୃଷ୍ଟିରେ ଚାହିଁ ରହିଅଛନ୍ତି, ଦାସୀ ସେବା କରୁଅଛି । ମୋତେ ଦେଖି ମାତାଙ୍କର ଶୋକସମୁଦ୍ର ଉଚ୍ଛୁଳି ଉଠିଲା, ସେ ରୋଦନ କରିବାକୁ ଲାଗିଲେ । ମୁଁ ରୋଗିଣୀର ଅବସ୍ଥା ଦେଖିବା ଲାଗି ଧୀରେ ଧୀରେ ଶଯ୍ୟା ନିକଟକୁ ଗଲି । ସମୀପସ୍ଥ ଦୀପାଲୋକର ଉଜ୍ଜ୍ୱଳ ରଶ୍ମିରେଖା ରୋଗିଣୀର ମୁଖମଣ୍ଡଳରେ ପଡ଼ିଅଛି । କିନ୍ତୁ ଏ କିଏ ? ରୋଗିଣୀ ଆଡ଼କୁ ଦୃଷ୍ଟିପାତ କଲାମାତ୍ରେ ମୁଁ ଚମକି ଉଠିଲି । କି ଏକ ଅନୁଭୂତିର ସ୍ପନ୍ଦନରେ ମୋର ହୃଦୟର ସମସ୍ତ ଜ୍ୱାଳାଯନ୍ତ୍ରଣା ପ୍ରଶମିତ ହୋଇଗଲା । କୃଷ୍ଣବର୍ଣ୍ଣରେ ଏପରି ରୂପ ମୁଁ କେଉଁଠାରେ ଦେଖି ନାହିଁ । ପୀଡ଼ା ହେତୁ ମୁଖ ବିବର୍ଣ୍ଣ ହୋଇ ଯାଇଅଛି ସତ୍ୟ

କିନ୍ତୁ କି ସୁନ୍ଦର ଦେହ ! କି କମନୀୟତା ! ମୃତ୍ୟୁଆସନ୍ନ ସେପରି ଗୋଟିଏ ଲାବଣ୍ୟ ଓ କୋମଳତାର ଛବି ଚହଟି ଯାଉଅଛି । ବିଶେଷତଃ ଚଞ୍ଚଳ ଆକର୍ଣ୍ଣ-ବିସ୍ତୃତ ନୟନଯୁଗଳର ସେଉଁ ଅପୂର୍ବଶ୍ରୀ ଦେଖିବା ମୋ ପକ୍ଷରେ ଏହାହିଁ ପ୍ରଥମ ।

ମୁଁ ଦାସୀ ହାତରୁ ପଙ୍ଖା ନେଇ ଧୀରେ ବ୍ୟଜନ କରିବାକୁ ଲାଗିଲି, ସୁଶୀଳାର ଆରୋଗ୍ୟ ନିମନ୍ତେ ଭଗବାନଙ୍କୁ ଅନ୍ତରର ସହିତ ପ୍ରାର୍ଥନା କଲି । ମୋର ଅନୁତାପାଶ୍ରୁଧୌତ ହୃଦୟର ଐକାନ୍ତିକ ବ୍ୟାକୁଳ ପ୍ରାର୍ଥନା ବୋଧହୁଏ କୃପାମୟଙ୍କ ଚରଣ ତଳେ ପହଞ୍ଚିଗଲା । ଔଷଧସେବନ ଫଳରେ କ୍ରମେ ସୁଶୀଳାର ଚୈତନ୍ୟ ସଞ୍ଚାର ହେଲା । ସେ ପଦେ ଅଧେ କଥା କହିବାକୁ ସମର୍ଥ ହେଲା । ମାତା ସୁଶୀଳାର ହସ୍ତ ଧାରଣ କରି ସାଶ୍ରୁ ନୟନରେ କହିଲେ, "ମା, ତମକୁ କଥା କହିବାର ଦେଖିବି, ମୋର ଏ ଭରସା ନ ଥିଲା ।" ବର୍ତ୍ତମାନ ସୁଶୀଳାର ଦୃଷ୍ଟିଶକ୍ତି କ୍ରମେ ଫେରି ଆସୁଅଛି । ସେ କହିଲା, "ମୋର ଅସାର ଜୀବନରେ କିଛି ଲକ୍ଷ୍ୟ ନାହିଁ । ମୋର ମରଣହିଁ ମଙ୍ଗଳ ।" ମାତା ବାଧା ଦେଇ କହିଲେ, "ମା, ସେ କଥା ଆଉ ମୁହଁରେ ଧର ନା ! ଭଗବାନ୍ ଆମ ପ୍ରତି ସଦୟ ହୋଇଅଛନ୍ତି । ବସନ୍ତ ପାଞ୍ଚ ଦିନ ହେଲା ତୋ ଶେଯପାଖରେ ବସି ଦିନରାତି ସେବା କରୁଛି ।" ମୋତେ ସେଠାରେ ଉପସ୍ଥିତ ଦେଖି ମାତା ଏହି କଥା କହି କିଛି କାର୍ଯ୍ୟାନ୍ତରର ଛଳନା କରି ବାହାରିଗଲେ । ସୁଶୀଳାର କଥା ଶୁଣି ମୋର ହୃଦୟ ଉଚ୍ଛୁଳ ହେଲା । ମୁଁ ଆଉ ସହ୍ୟ କରି ପାରିଲି ନାହିଁ । ସୁଶୀଳାର ଶଯ୍ୟା ନିକଟକୁ ଯାଇ ତାହାର ହସ୍ତ

ଧାରଣ କରି କହିଲି, "ସୁଶୀଳା ! ସୁଶୀଳା ! ମୋ ଦୋଷ କ୍ଷମା କର । ମୁଁ ତୁମର ଅଯୋଗ୍ୟ, ତଥାପି ତୁମ ପରି ଗୁଣବତୀ ରମଣୀ ପକ୍ଷରେ ସବୁ ସମ୍ଭବ ।" ମୋ କଥା ଶୁଣି ସୁଶୀଳାର କପୋଳ ଲଜ୍ଜାରେ ରକ୍ତିମାଭ ହୋଇଗଲା, ନେତ୍ର ନିମୀଳିତ ହୋଇ ଆସିଲା । ମୁଁ ତାର ସୁବର୍ଣ୍ଣ ଓଷ୍ଠାଧରରେ ମୋର ଓଷ୍ଠାଧର ମୁଦ୍ରିତ କରିଦେଲି । ସୁଶୀଳାର ଶୀର୍ଣ୍ଣ ବାହୁଲତା ମୋର କଣ୍ଠରେ ବେଷ୍ଟିତ ହୋଇଗଲା ·

---

## ମୋହର ଘେର

ରାଧାଶ୍ୟାମ ବାବୁଙ୍କ ଆର୍ଥିକ ଅବସ୍ଥା ଏତେ ଶୋଚନୀୟ ବୋଲି ତାଙ୍କ ମୃତ୍ୟୁ ପୂର୍ବରୁ କାହାରି ଧାରଣା ନ ଥିଲା । ଜଣେ ସାଧୁ ସଚ୍ଚୋ ଧର୍ମଭୀରୁ ବୋଲି ତାଙ୍କର ସୁଖ୍ୟାତି ଥିଲେ ମଧ୍ୟ କୋଡ଼ିଏ ବର୍ଷ ଧରି ଜଜ୍‌କୋର୍ଟର ପିରସ୍ତାଦାରୀ କାମ କରି ସେ ଯେ ଦଶ୍ ଟ' ପଇସା ରଖିପାରି ନାହାନ୍ତି ଏ ସନ୍ଦେହ କାହା ମନରେ କେବେ ସ୍ଥାନ ପାଇ ନାହିଁ । କିନ୍ତୁ ରାଧାଶ୍ୟାମ ବାବୁଙ୍କ ଅନ୍ତ୍ୟେଷ୍ଟିକ୍ରିୟା ପରେ ପେଡେଡବେଙ୍କର ମହାଜନମାନେ ପିମ୍ପୁଡ଼ି ପରି ତାଙ୍କ ଘରକୁ ଧାଡ଼ି ହେବାକୁ ଲାଗିଲେ, ପ୍ରକୃତ ଅବସ୍ଥା ବୁଝିବାକୁ କାହାରି ବାକି ରହିଲା ନାହିଁ । ଏଥିରେ ଅନେକେ ଶାନ୍ତିରେ ଟିକେ ନିଃଶ୍ୱାସ ମାରି ଶୋକସନ୍ତପ୍ତ ପରିବାରବର୍ଗଙ୍କୁ ସାନ୍ତ୍ୱନା ଦେବା ଲାଗି ଦଳ ଦଳ ହୋଇ ରାଧାଶ୍ୟାମ ବାବୁଙ୍କ ଦୁଆରେ ଉପସ୍ଥିତ ହେଲେ । ଏ ଦୁଃଖ ସମୟରେ ସ୍ୱର୍ଗତ ରାଧାଶ୍ୟାମ ବାବୁଙ୍କ ସ୍ତ୍ରୀ ଅଭ୍ୟାଗତ ଭଦ୍ରଲୋକଙ୍କ ଅଭ୍ୟର୍ଥନାରେ କୌଣସି ତ୍ରୁଟି କଲେ ନାହିଁ । ଭଦ୍ରଲୋକମାନେ ମଧ୍ୟ ବୈଠକ ଖାନାରେ ବସି ପାନ ଓ ଧୂମ୍ରପାନ ସହଯୋଗରେ ରାଧାଶ୍ୟାମ ବାବୁଙ୍କ ଧର୍ମପ୍ରାଣତାର ଉଚ୍ଚସ୍ୱର ବର୍ଣ୍ଣନାରେ ନାନା ଆଶ୍ୱାସବାଣୀ ପ୍ରଦାନ କରିବାକୁ ଲାଗିଲେ ଓ ଆବଶ୍ୟକ ହେଲେ ସ୍ୱର୍ଗତଙ୍କ ସେମାନଙ୍କ ପାଇଁ ଉପଯୁକ୍ତ ରକମର ତ୍ୟାଗ ସ୍ୱୀକାର କରିବାକୁ ପ୍ରସ୍ତୁତ ହେଲେ ।

ମାଳମଣି ତ ଜଣେ ବେ-ପରୁଆ ଲୋକ । କୌଣସି କଥା ତା ମନରେ ବେଶି କ୍ଷଣ ସ୍ଥାନ ପାଏ ନାହିଁ । ଯେତେ ବଡ଼ ବିପଦ ହେଉ ପଛକେ, ତାକୁ ସହଜରେ ଅଭିଭୂତ କରିପାରେ ନାହିଁ । କୌଣସି ବସ୍ତୁ ତା ମନ ଉପରେ ଗୋଟିଏ ଆଧିପତ୍ୟ ବିସ୍ତାର କରିବ, ଏକଥା ତାକୁ ଅସହ୍ୟ ବୋଧହୁଏ । ଏଥିଲାଗି କୌଣସି କାର୍ଯ୍ୟରେ ସେ କେବେ ଧରାଛୁଆଁ ଦିଏ ନାହିଁ । ସର୍ବଦା ଗୋଟାଏ କଳ୍ପ ଖିଆଲ ପଛରେ ଉଡ଼ି ଉଡ଼ି ବୁଲୁଥାଏ । ମାଳମଣି ପରି ମେଧାବୀ ଓ ବୁଦ୍ଧିମାନ ଛାତ୍ର ସାଧାରଣତଃ ଦେଖାଯାନ୍ତି ନାହିଁ । ସେ ଇଚ୍ଛା କରିଥିଲେ ଦେଶରେ ଗୋଟିଏ କୀର୍ତ୍ତିମୟ ଆସନ ଲାଭ କରି ପାରିଥାନ୍ତା କିନ୍ତୁ ସେ ଉଚ୍ଚ ଆକାଂକ୍ଷା ତା ମନକୁ କଦାପି ଅନୁପ୍ରେରିତ କରି ନାହିଁ । ସୁତରାଂ ପଢ଼ାପଢ଼ି ପ୍ରତି ମମତାଟା ମଧ୍ୟ ସେହି ଅନୁପାତରେ—କେବଳ କଲେଜରେ ନାମଟା ଥାଏ ମାତ୍ର । ମାଳମଣିର ଶକ୍ତି ଉପରେ ସମସ୍ତଙ୍କର ଆସ୍ଥା ଥିଲେ ମଧ୍ୟ ସମସ୍ତେ ତାକୁ ବଡ଼ ଦୟାର ପାତ୍ର ବୋଲି ମନେ କରନ୍ତି । ଏଥିଲାଗି ମାଳମଣିକୁ ଘରର ବର୍ତ୍ତମାନ ଦୁର୍ଦ୍ଦଶା କଥା ଜଣାଇବା କେହି ଆବଶ୍ୟକ ବୋଧ କଲେ ନାହିଁ, କାରଣ ତାକୁ କହିବା ନ କହିବା ସମାନ ।

କୁଳମଣି ବୟସରେ ସାନ ହେଲେ ମଧ୍ୟ ବୈଷୟିକ ଜ୍ଞାନରେ ମାଳମଣିଠାରୁ ଅନେକ ବଡ଼ । କିନ୍ତୁ ତାହାର ବା କଣ ହୋଇ ପାରେ ?

ବଳଆଣ୍ଡି ବର୍ତ୍ତମାନ ପରିବାରର ଏକମାତ୍ର ଭରସାର ସ୍ଥଳ । ସେ ଅନେକ ଦିନର ବିଶ୍ବାସୀ ଲୋକଟି, ମାଲିକ ଚତୁର ମଧ୍ୟ ଖୁବ୍ ।

ତେବେ ରାଧାଶ୍ୟାମ ବାବୁଙ୍କ ସ୍ତ୍ରୀ ତାଙ୍କର ଅଳଙ୍କାର ବାକ୍ସଟି କନିଆ ଆଗରେ ରଖି ଦେଇ କହିଲେ, "ଦେଖ କନିଆ ! ସମ୍ପତ୍ତି ମଧ୍ୟରେ ବର୍ତ୍ତମାନ ମୋର ଏହି ଅଳଙ୍କାରତକ । ଦେଖୁଛୁ, ଏଥିକୁ ଆଉ ରଖି ହେବ ନାହିଁ । ମହାଜନମାନଙ୍କ ଜୁଲୁମ ଦିନକୁ ଦିନ ବଢ଼ି ଚାଲିଲା । ସେମାନଙ୍କର ବା ଦୋଷ କଣ ? ଆଉ କେତେ ଦିନ ସେମାନେ ସମ୍ଭାଳିବେ ? କି ଭରସାରେ ଦେଖି ସେମାନେ ଆମକୁ ଆଉ ବିଶ୍ୱାସ କରିବେ ? ଘର ବା ଏମିତି ଚଳିବ କିପରି ? ମୋ ପିଲାମାନେ ଯେବେ କଷ୍ଟ ପାଇଲେ, ଏ ଅଳଙ୍କାର ଥାଇ ମୋର କଣ ହେବ ? ତୁ ଏ ବାକ୍ସ ନେଇ ଦାମୋଦର ମହାପାତ୍ର ଦୋକାନକୁ ନେଇଯା, ଗ୍ରହଣ କରି ତାକୁ ଦେଇ ଆସିବୁ । ତାକୁ କହିବୁ, ସେ ନିଜେ ରଖୁ ବା ବିକି ନେଉ, ୧୦।୧୨ ଦିନ ମଧ୍ୟରେ ଦେଇଦେଉ, ଟଙ୍କାଟା ମୋ ହାତପାଇଁ ଦରକାର । ମୁଁ ଜାଣିଛି ଏ ଅଳଙ୍କାରତକ ଖାଲି ଓଜନ ଦରରେ ବିକି ହେଲେ ହଜାରେ ଟଙ୍କାରୁ ଊଣା ହେବ ନାହିଁ । ଋଣ ଶୁଝିବାରେ ପାଞ୍ଚଶ ଟଙ୍କା ଦେଇଦେଲେ ବାକି ଟଙ୍କାରେ ଏବର୍ଷଟା କୌଣସି ପ୍ରକାରେ ଚଳାଇ ହୋଇଯିବ । ତେଣିକି ଭଗବାନଙ୍କ ଦୟା ଥିଲେ ଦେଖାଯିବ ।"

ରାଧାଶ୍ୟାମ ବାବୁଙ୍କ ସ୍ତ୍ରୀ ଏକଥା କହିଲାବେଳେ ଏକା ନିଃଶ୍ୱାସରେ କହି ପକାଇଲେ । କିନ୍ତୁ ସେ ନିଜର ମନୋଭାବ ଗୋପନ କରିବାକୁ ଚେଷ୍ଟା କଲେ ମଧ୍ୟ ତାଙ୍କ ଆଖି କୋଣରୁ ଗୋଟିଏ ଅଶ୍ରୁବିନ୍ଦୁ କନିଆର ଦୃଷ୍ଟି ଅତିକ୍ରମ କରିପାରିଲା ନାହିଁ । କନିଆ କି ଉତ୍ତର ଦେବ, କିଛି ସ୍ଥିର କରିପାରିଲା ନାହିଁ— କେବଳ ତଳକୁ ମୁହଁ ପୋତି ଛିଡ଼ା ହୋଇ ରହିଲା ।

ଏହି ସମୟରେ ମାଳମଣି ପାଖ ଘରେ ବସି ଗୋଟିଏ ବେହେଲାର ତାର ବଜାଉଥିଲା । ବୋଲିବା ବାହୁଲ୍ୟ, କଣ୍ଠସ୍ୱର ଓହଲା ବେହେଲା ବଜାଇବାକୁ ତାର ବଡ଼ ସ୍ୱଙ୍କ ଉଠୁଛି । ମା'ଙ୍କ କଥାଗୁଡ଼ିକ ସବୁ 'ତା' କାନରେ ପଡ଼ିଲା । ବାପା ଯେ ଅନେକ-ଗୁଡ଼ିଏ ଦେଣା ରଖି ଯାଇଅଛନ୍ତି ଓ ତାହା ପରିଶୋଧ କରିବାର ସେପରି କିଛି ଉପାୟ ନ ଥିବାରୁ ଘରେ ଯେ ଗୋଟିଏ ଅଶାନ୍ତିର ଛାୟା ଆସି ପଡ଼ିଅଛି, ଏହା ମାଳମଣି ଅନେକ ଦିନରୁ ଲକ୍ଷ୍ୟ କରିଥିଲା; କିନ୍ତୁ କଥାଟା ଯେ ଏପରି ଗୁରୁତର ଆଉ ସେଥିଲାଗି ଯେ ତାକୁ ଘରକେଣି କରିବାକୁ ପଡ଼ିବ, ଏହା ସେ ଭାବି ନ ଥିଲା । ସେ ମନେ କରିଥିଲା, ସତାଶ ଲୋକମାନଙ୍କର ଏ ଗୋଟାଏ ସ୍ୱାଭାବିକ ଅବସ୍ଥା ଓ ସେ ଅବସ୍ଥାଟା କିଛି ଚିରକାଳ ଆସନ ଦଖଲ କରି ରହିବ ନାହିଁ । କିନ୍ତୁ କେଜାଣି କାହିଁକି, ଆଜି ମା'ଙ୍କ କଥାଗୁଡ଼ାକ ତା ଅନ୍ତରରେ ଟିକିଏ ଆଘାତ କଲା, ଏପରି କି, ସେ କଥା ମଧ୍ୟରେ ଯେ ଗୋଟାଏ ବେଦନାର ସ୍ୱର ଅଛି, ତାହା ତାର ବୁଝିବାକୁ ବାକି ରହିଲା ନାହିଁ ।

ମାଳମଣି କଣ ଭାବି ପ୍ରାୟ ଦୁଇ ମିନିଟ ପର୍ଯ୍ୟନ୍ତ ଘରର କଡ଼କୁ ଚାହିଁ ରହିଲା ଓ ହଠାତ୍ ଉଠି ବାହାରି ପଡ଼ି ଦପି ଦପି ଯାଇ ମା'ଙ୍କୁ କହିଲା, "ମା, ଅଳଙ୍କାରଗୁଡ଼ାକ କଣ ବିକି କରିବାକୁ ଦେଉଛ ?"

ମା କହିଲେ, "ହଁ ରେ ବାପ ! ଆଉ ଉପାୟ କଣ ? ନହେଲେ ଦିନ ଅଛ ତୁମେମାନେ ଘରର ଧାରଚାକରା ହୋଇ ରହିବ ;"

ଜଳମନ୍ତ୍ରୀ କହିଲେ, "ହଁ, ମୋତେ ସବୁ ଦେଶ କଥା କେତେ ଜଣା ନଥିବେଣି । ଏ ମହାଜନମାନଙ୍କର ଧନ ଠିକ୍ ଅଛି କି ନାହିଁ ? ନାଟପୋଟ ନେଇକିଏଁ ନେଉଥିଲେ ଟଙ୍କା ନେଇ କଥା । କୌଣସି ପ୍ରକାରେ ସେମାନଙ୍କର ଗାଇଣା ଶୁଣି ହେଲେ ମନ୍ତ୍ରୀ ତାଙ୍କ ଦାଉରୁ ଖଲାସ ପାଇବ ।"

ମା ଜଳ୍ପି କଥା ନ କହି ନୋଟିସ ଗର୍ବ ଅସନ୍ତୋଷ ଦେଖାଇ ଚାଳକୁ ମୁହଁ ଫେରାଇ ବସିଲେ ।

ଜଳମନ୍ତ୍ରୀ ନିବସନ୍ତୁ କହିଲେ, "ବଜାର ସୁନା ରୂପା କଥା ଜଣା ଜାଣେ ସେ, ତାହା ସାଙ୍ଗରେ ଏସବୁ ଦେଉଛନ୍ତି ? ଏ ତ ଆଉ ଖାଲି ମାତ୍ର ମୂଲ ନୁହେଁ । ଆଚ୍ଛା, ମୁଁ କାଲି ଯାଇ ଏଥିକୁ ଠିକ୍ କରିବାର ବନ୍ଦୋବସ୍ତ କରିବି । ହଁ, କାଲି ସେମାନେ କେତେଗୁଡ଼ିଏ ତଥ୍ୟର ଗହଣା ଗଢ଼ିବାକୁ ଦେଇଥିଲେ । ଦେଖିବେ, ସେ ସବୁ ଯିବ, ସେବେ ଗଣ୍ଡା ମୂଲଟା ଆଉ ଲୋକମାନେ ପିଇବ ନାହିଁ । ତୁ ସେତେବେ ଏସବୁ ରହିଥା, ମୁଁ ୨।୩ ଦିନ ମଧ୍ୟରେ ହେଉ ନ ହେଉ ବୁଝିକରି କହିବି ।"

ଏହା କହିଦେଇ ଜଳମନ୍ତ୍ରୀ କାମିଜ୍ ଗଣ୍ଠି ଲଗାଇ ଶୀଘ୍ର ବାହାରି ପଡ଼ିଲେ । ମା ଜଳମନ୍ତ୍ରୀ କଥାରେ ସମ୍ପୂର୍ଣ୍ଣ ବିଶ୍ୱାସ ନ କଲେ ବୁଝା ବହୁଦିନର ପ୍ରିୟ ଅଳଙ୍କାରଗୁଡ଼ିକ ସେ ଆଉ କେତେଟା ଦିନ ଅନ୍ତତଃ ଘରେ ରହିବ, ଏଥିରେ ଟିକିଏ ଆଶ୍ୱସ୍ତ ହୋଇ ବାଳପଟି ଦେଇ ଘର କାମରେ ଲାଗିଗଲେ ।

ଏହାର ଚାରି ଦିନ ପରେ ଦିନେ ସନ୍ଧ୍ୟାବେଳେ ମାଳମଣି ଆସି ମା'କୁ କହିଲା, "ମା, ମୋର ଷ୍ଟ୍ରିଏ ଚାକିରି ହୋଇଛି ।"

ମା ଅତି ଆଶ୍ଚର୍ଯ୍ୟ ହୋଇ କହିଲେ, "ତୋର କି ଚାକିରି ହେଲା ରେ ?"

ମାଳମଣି—ଅନେକ ଦିନ ହେଲା ମୋର ପଢ଼ାପଢ଼ିରେ କାହିଁକି ଆଉ ମନ ଲାଗୁନାହିଁ । ବୃଥା ସମୟ କଟାଇବା ଅପେକ୍ଷା ବରଂ ଦି'ପଇସା ରୋଜଗାର କରିବାର ବାଟ ଦେଖିବା ଭଲ ବୋଲି ଭାବିଣ ମୁଁ କିଛିଦିନ ତଳେ ଷ୍ଟ୍ରିଏ ଚାକିରି ପାଇଁ ଦରଖାସ୍ତ ପକାଇ ଦେଇଥିଲି । ଆଜି ଖବର ପାଇଲି ସେ କାମଟା ମୋର ହୋଇଛି । ବର୍ତ୍ତମାନ ୨୫ ଟଙ୍କା ଦରମା ମିଳିବ ଓ ଭବିଷ୍ୟତରେ ଉନ୍ନତିର ଆଶା ମଧ୍ୟ ଅଛି ।

ମା—ତେବେ ସତେ କଣ ତୁ ପଢ଼ା ଛାଡ଼ିଲୁ ?

ମାଳ—ଆଉ ତାଇ ଚାକିରି କରିବି ବୋଲି ସ୍ଥିର ଜବାବ ଦେଇ ଆସିଲି ପରା ! ପଢ଼ା ନ ଛାଡ଼ି ଆଉ କରିବି କଣ ?

ରାଧାଶ୍ୟାମ ବାବୁଙ୍କ ସ୍ତ୍ରୀଙ୍କର କେତେ ଗୋଟାଏ ଧାରଣା ଥିଲା ଯେ, ମାଳମଣି ଦିନେ ନିଶ୍ଚୟ ଜଣେ ବଡ଼ଲୋକ ହୋଇ ବଂଶର ମୁଖ ଉଜ୍ଜ୍ୱଳ କରିବ, ଏପରିକି ତାର ଦୁର୍ଗୁଣ ଗୁଡ଼ାକ ମଧ୍ୟ ସେ ଭବିଷ୍ୟତ ବଡ଼ଲୋକର ଅପରିହାର୍ଯ୍ୟ ଲକ୍ଷଣ ବୋଲି ଧରିନେଇ ବରଂ ତାର ପ୍ରଶ୍ରୟ ଦେଉଥିଲେ । କିନ୍ତୁ ହଠାତ୍ ତାଙ୍କର ଆଶାଟା ଏତେ କ୍ଷୁଦ୍ର ପଚିଶ ଟଙ୍କାର ସୀମା ମଧ୍ୟରେ ଆବଦ୍ଧ ହୋଇ ଯିବାର

ଦେଖି ସେ ଟିକିଏ ଉଦାସ ହୋଇ ଗଲେ । ଶାହାଜାଦଙ୍କ, ଘରର ବର୍ତ୍ତମାନ ଅବସ୍ଥା ଦେଖିକି ସେ ଏଥିଂକୁ ଏକାନ୍ତ ଦୁଃସମ୍ବାଦ ବୋଲି ମନେକଲେ ନାହିଁ ।

ଏ ଖବରଟି ଶୁଣି ଲାଲମଣି ନାଚିବାକୁ ବାହାରିବାରୁ ମା ପଚାରିଲେ, "ଦେଖ ରେ ଲାଲୁ, ଅଳଙ୍କାର ବନ୍ଧା କଥା କଣ ହେଲା ? କଏ ଟଙ୍କା ନେବାକୁ କହୁଥିଲା ?"

ଲାଲ—ହଁ, ସେ ନେବାକୁ କହୁଛି, କିନ୍ତୁ ଚାରି ଟଙ୍କାର ଯୋଗାଡ଼ ହୋଇ ନ ଥିବାରୁ ନେବାକୁ ଟିକିଏ ବିଳମ୍ବ ହେବ । ହଉ, ଏତେ ତରତର କାହିଁକି ?

ମା—ମହାଜନମାନେ କଣ ସମ୍ଭ୍ରାନ୍ତ ? ଶେଷରେ ସାହୁଙ୍କ ମନଦୁଃଖ ହେଲେ କଣ ଭଲ ହେବ ?

ଲାଲ—ଏତେ ଦିନ ତ ଗଲା, ଆଉ କେଇଟା ଦିନରେ କଣ ଅଛି ? ଆଜି ଏଠାରେ ସେମାନେ ଟଙ୍କା ଚାହିଁ ଆସନ୍ତୁ, ଦେଖାଯିବ ।

ଏହା କହି ଲାଲମଣି ସେଠାରୁ ଚାଲିଗଲା ।

ଏହି ପାଞ୍ଚ ଦିନରେ କେତେ ଜଣଙ୍କୁ ଟଙ୍କା ଦେବାପାଇଁ କଥା ଦିଆ ହୋଇଥିଲା । ସେ ଦିନ ନ ଦେଲେ ସେମାନେ ନାଲିଶ ଦାଏର କରିବେ । କିନ୍ତୁ ମାସ ଦିନ ଗଲା, ମାସେ ଗଲା, କୌଣସି ମହାଜନ ଆଉ ଟଙ୍କା ମାଗିବାକୁ ଆସିଲେ ନାହିଁ । କଥା କଣ ? ଲାଲମଣିଙ୍କ ମା ପ୍ରଥମେ କିଛି ବୁଝିପାରିଲେ ନାହିଁ । ଶେଷରେ ଶୁଣିଲେ, ତାଙ୍କୁ କେହି ଜଣେ ନ ଥିବାରୁ ପିତା ସମସ୍ତେ ଆମକୁ

ଭିତରେ ହେଉଛି ମନ, ସେ ଯେ ଯୋଗ୍ୟ ହୋଇ ଘରର ନାମ ରକ୍ଷିପାରିବ, ସେ ବିଷୟରେ ତାଙ୍କର ସନ୍ଦେହ ନ ଥିଲା । କିନ୍ତୁ ଯେତେବେଳେ ଶୁଣିଲେ ଯେ, ସେ ବର୍ଷ ଏଣ୍ଟ୍ରାନ୍ସ ପରୀକ୍ଷାରେ କୁଳମଣି ଫେଲ ହୋଇଅଛି, ସେ ବଡ଼ ମର୍ମାହତ ହୋଇ ପଡ଼ିଲେ । ବାପାଙ୍କ ମୃତ୍ୟୁ ଯୋଗୁଁ ସେ ବର୍ଷ ତାର ପଢ଼ା ଶୁଣାରେ ଅନେକ ବ୍ୟାଘାତ ଘଟିଥିଲା ଜାଣି ବୁଢ଼ା ତାଙ୍କ ମନ ବୁଝିଲା ନାହିଁ ।

କୁଳମଣି କିନ୍ତୁ ଏ ଖବର ପାଇ ବେଶି ଦୁଃଖିତ ହେଲା ନାହିଁ । ବିଶ୍ୱବିଦ୍ୟାଳୟର ସାର୍ଟିଫିକେଟ୍ ଛଡ଼ା ତାର କାହିଁକି ପିଲାଦିନୁ କେବେହେଲେ ଗୋଟାଏ ମୋହ ନ ଥିଲା ଓ ସରକାରୀ କର୍ମ-ଚାରୀମାନଙ୍କ ଦୁର୍ଦ୍ଦଶା ଆଖିରେ ଦେଖି ଚାକିରି ପ୍ରତି ତାର ଗୋଟାଏ ବିତୃଷ୍ଣା ଜନ୍ମି ଯାଇଥିଲା । କୌଣସି ଗୋଟିଏ ସ୍ୱାଧୀନ ବ୍ୟବସାୟ ଅବଲମ୍ବନ କରିବାକୁ ତାର ଆନ୍ତରିକ ଇଚ୍ଛା; କିନ୍ତୁ ସେଥିକି କେଉଁଠି ଜଣଙ୍କ ସାହାଯ୍ୟର ଜରୁର ?

ଫେଲ ହୋଇ ବିଶେଷ ଦୁଃଖିତ ନ ହେଲେ ସୁଦ୍ଧା ବର୍ତ୍ତମାନ କଣ କରିବ, ଏ ଭାବନା ତାକୁ ବିବ୍ରତ କରି ପକାଇଲା । ପୁଣି ସେ ନାମ ଲେଖାଇ ଯାଇ ସ୍କୁଲରେ ପଢ଼ିବ, ଏଥିଲାଗି ତାର ଆଦୌ ମନ ଯୋଗାଇଲା ନାହିଁ ।

ଦିନେ ଲୁଗା କିଣିବାକୁ ଯାଇ କପଡ଼ ଲାଇନ ମାଡ୍ରୁଆଡ଼ିଙ୍କ ଘରେ କୁଳମଣିର ଦେଖା ହେଲା । ରାଧାଶ୍ୟାମ ବାବୁଙ୍କ ସଙ୍ଗେ କପଡ଼-ବାଲାଙ୍କର ବଡ଼ ଘନିଷ୍ଠତା ଥିଲା, ଏପରି କି ବିବାହ ଜମିଦାରୀରେ

ଘର ବେଇବା ପର୍ଯ୍ୟନ୍ତ ଚଳୁଥିଲା । ରାଧାଶ୍ୟାମ ବାବୁଙ୍କଠାରୁ ଅନେକ ଉପକାର ପାଇଥିବାର କପନ୍ ଲାଲ ଆଜିକାଲି ହୁଷା ମୁକ୍ତ କଣ୍ଠରେ ସ୍ୱୀକାର କରନ୍ତି ।

କପନ୍ ଲାଲ କୁଳମଣିକୁ ତାଙ୍କ ଘରକଥା ପଚାରିବାରୁ ସେ ନିଃସଙ୍କୋଚରେ ସବୁକଥା କହିଗଲା । କପନ୍‌ଲାଲ ଅନେକ ଦୁଃଖ ପ୍ରକାଶ କରି ଶେଷରେ କହିଲେ, "ସେଥି ସ୍କୁଲକୁ ବୃଷ୍ଟି ବୃଷ୍ଟି ତୁମ ଜାତିର ଏ ଅବସ୍ଥା । ଏମିତି ନଷ୍ଟିନା ଅପମାନ ପାଇ ସୁଦ୍ଧା ସ୍କୁଲର ଚାକିରି ନେଇ ତୁମ୍ଭମାନଙ୍କୁ ତ୍ରୁଟି ପର ଚାରି ନେଉଛନ୍ତି ମୁଁ ବୁଝି ପାରୁ ନାହିଁ ।"

"ସମସ୍ତଙ୍କର ତ ଆଉ ସ୍ୱାଧୀନ ବ୍ୟବସାୟ କରିବାର ସୁବିଧା ନାହିଁ ?"

"ସୁବିଧା ନାହିଁ କାହିଁକି ? ଧନ, ମନ ନାହିଁ, ସାହସ ନାହିଁ । ମୁଁ ଯେତେବେଳେ ପ୍ରଥମେ ଆମ ଦେଶରୁ ଏଠାକୁ ଆସେ; ମୋ ହାତରେ ପଇସାଟିଏ ସୁଦ୍ଧା ପାଣ୍ଠି ନ ଥିଲା । ଏଠାକୁ ଆସି ଜଣେ ମହାଜନ ଦୋକାନରେ କେତେ ବର୍ଷ ଚାକିରି କରି କେତୋଟି ଟଙ୍କା ହାତରେ ଜମେଇଲି ଓ ସେହି ଟଙ୍କାକୁ ପାଣ୍ଠି କରି ଖଣ୍ଡିଏ ଲୁଗା ଦୋକାନ ଆରମ୍ଭ କଲି । ସେହି ସାମାନ୍ୟ ପାଣ୍ଠି ବଢ଼ି ବଢ଼ି ମୋର ବର୍ତ୍ତମାନ ଲକ୍ଷାଧିକ ଟଙ୍କାର କାରବାର ଚାଲିଛି । ମୁଁ ତୁମ ବି. ଏ. ଏମ୍. ଏ. ପାସ୍ କରି ନ ଥିଲି କି କୌଣସି ବାପଘରର ହୋଇ ନ ଥିଲି । କେବଳ ଜଣେ ସ୍କୁଲର କରି ଏବେ ପଇସା

କମଲକାନ୍ତ ? ତୁମେ ତ ମୁକ୍ତ କରିବା ପାଇଁ ଚାଟ ପଡ଼ୁଛ; କେତେ ଟଙ୍କା ରୋଜଗାର କରିବାର ଆଶା କର ଭଲା ?"

"ମୋର ମଧ୍ୟ କୋଉଠାଏ କିଛି ବାଣିଜ୍ୟ ବ୍ୟବସାୟ କରିବାକୁ ଖୁବ ଇଚ୍ଛା, କିନ୍ତୁ ମୂଳଧନ ନାହିଁ ?"

"ମୂଳଧନ ପାଇଁ କଥା ଅଟକି ଯାଏ ନାହିଁ । ମୂଳଧନ ଯୋଗାଇବାକୁ ହୁଏ । ତୁମର ଯଦି ଏପରି ଇଚ୍ଛା, ମୋ ଦୋକାନରେ ଆସି କାମଦାମ ଶିଖ, ମୁଁ ମଧ୍ୟ ସ୍ୱଭାବ ଚରିତ୍ର ଦେଖିବା ଭଳି ଜଣେ ଲୋକ ଖୋଜୁଥିଲି । କାରବାରଟା ଅନେକ ବଢ଼ିଗଲାଣି । ଏ ବର୍ଷ ପୃଥ୍ୱୀ ଗଡ଼ଜାତର କାଠ ଓ ଲାଖ ବ୍ୟବସାୟ ହାତକୁ ନେଇଛି । ଦେଖୁଛି, ଆଉ ଜଣେ ଲୋକ ନ ରଖିଲେ ଚଳିବ ନାହିଁ । ତୁମେ ଏଥିରେ ବର୍ଷେ କେତେ ରହି ଯଦି ଭଲ କାମ ଦେଖାଅ, ତାହାହେଲେ କେତେଗୋଟି କାରବାରର ଭାର ତୁମ ଉପରେ ଦେଇଦେବି ଓ ତେବେ ସେଥିରୁ ଲାଭର କିଛି ଅଂଶ ମଧ୍ୟ ତୁମେ ପାଇ ପାର । ଏଥିରେ ରହିଲେ ତୁମେ ବେପାର ଶିଖିବାର ଅନେକ ସୁବିଧା ପାଇବ । ତୁମେ ଯେପରି ପରିଶ୍ରମୀ, ମୋର ବିଶ୍ୱାସ, ଏ କାମ ତୁମ ହାତରେ ଭଲ ଚାଲି ପାରିବ ।"

"ଆପଣ ମୋ ପ୍ରତି ଢେର୍ ଅନୁଗ୍ରହ ଦେଖାଇଲେ । କାଲିଠାରୁ ଆସି କାର୍ଯ୍ୟରେ ଯୋଗ ଦେବି ।"

କୁଳମଣି ରହିବାର ସ୍ଥିର ହେବାରୁ ଜେସନ୍ ଲାଲ ସାଧୁଙ୍କ ଅଗ୍ରିମରେ ଗୋଟିଏ ସୁବର୍ଣ୍ଣ ବଳୟ ଦେଇ ତାଙ୍କୁ ବିଦାୟ ଦେଲେ ।

କୁଳମଣି ନିଜ ସ୍ତ୍ରୀ ଓ ଅଳ୍ପକାଳର ଅନୁକୂଳ ସୁବିଧା ପାଇ ଅତ୍ୟନ୍ତ ଆନନ୍ଦିତ ହୋଇ ଘରକୁ ଫେରିଲା ।

ନଳମଣି ଓ ତାଙ୍କ ମାଆ ଏ କଥା ଶୁଣି ନାନା ଆପତ୍ତି ଦେଖାଇ କୁଳମଣୀକୁ ଏ ନୂଆ କାର୍ଯ୍ୟରୁ ନିବୃତ୍ତ କରାଇବା ପାଇଁ ଅନେକ ଚେଷ୍ଟା କଲେ । କିନ୍ତୁ ତାର ଦୃଢ଼ ସଂକଳ୍ପ କେହି ଟଳାଇ ପାରିଲେ ନାହିଁ ।

( ୩ )

କେତେଟା ମାସ ମଧ୍ୟରେ କାରଖାନା ମାଲିକ ବୁଝି ପାରିଲେ ଯେ, କୁଳମଣିକୁ ରଖିବା ଦ୍ୱାରା ସେ ଯେ କେବଳ ତା ପ୍ରତି ଯୋଗ୍ୟ ଅନୁଗ୍ରହ ଦେଖାଇ ଅଛନ୍ତି ତାହା ନୁହେଁ, ନିଜେ ମଧ୍ୟ ଜଣେ ବିଶ୍ୱାସୀ ଓ କାର୍ଯ୍ୟଦକ୍ଷ କର୍ମଚାରୀ ପାଇଅଛନ୍ତି । ପ୍ରଥମେ ପ୍ରଥମେ ମାଲିକ କୁଳମଣିର ଗତିବିଧି ଉପରେ ଗୋପନ ଭାବରେ ଦୃଷ୍ଟି ରଖିଥିଲେ । କିନ୍ତୁ ଯେତେବେଳେ ଦେଖିଲେ ଯେ, ସେ ସବୁ ଅବସ୍ଥାରେ ବିଶ୍ୱସ୍ତ ରହେ, ସେ କ୍ରମେ ତା ଉପରେ କେତେ ଗୁରୁତ୍ୱ ଦାୟିତ୍ୱପୂର୍ଣ୍ଣ କାର୍ଯ୍ୟର ଭାର ନ୍ୟସ୍ତ କଲେ । କୁଳମଣି ମଧ୍ୟ ସବୁ କାର୍ଯ୍ୟ ସୁପୁଷ୍ଟ ଚିତ୍ତରେ ଅତି ଯତ୍ନକାରେ କରିବାକୁ ଲାଗିଲା ଏବଂ ତାର ପ୍ରଭୁ ଯେ ଏତେ ଶୀଘ୍ର ତାର କର୍ମକୁଶଳତାର ପରିଚୟ ପାଇ ଅନେକ ପୁରାତନ କର୍ମଚାରୀଙ୍କ ଉପରେ ତାକୁ ସ୍ଥାନ ଦେଇଅଛନ୍ତି, ଏକଥା ବୁଝିପାରି ମନେ ମନେ ଟିକିଏ ଗର୍ବ ଅନୁଭବ କଲା ।

କୁଳମଣି ଜାଣେ, ତାର ବର୍ତ୍ତମାନ କାର୍ଯ୍ୟତତ୍ପରତା ଉପରେ ତାର ଭବିଷ୍ୟତର ବାଞ୍ଛାର ସଫଳତା ସମ୍ପୂର୍ଣ୍ଣ ନିର୍ଭର

କରୁଅଛନ୍ତି । ଏଥିଲାଗି ନିଜର କାର୍ଯ୍ୟ ମନେ କରି ସେ ପରମ ଉତ୍ସାହରେ ସବୁ କାର୍ଯ୍ୟ ସମ୍ପନ୍ନ କରେ । କେବେ କେହି ତାଠାରେ କ୍ଲାନ୍ତି ବା ବିରକ୍ତିର ଲକ୍ଷଣ ଦେଖି ନାହାନ୍ତି । କାର୍ଯ୍ୟରେ ତାର ଶାନ୍ତି, କାର୍ଯ୍ୟରେ ତାର ଆନନ୍ଦ ।

କୁଳମଣିର ବିଚକ୍ଷଣ ବ୍ୟବସାୟ-ବୁଦ୍ଧି ଓ ବିନୟ-ନମ୍ର ବ୍ୟବହାର ଦେଖି ଜୀବନ୍ ଲାଲ କ୍ରମେ ତା ପ୍ରତି ଆକୃଷ୍ଟ ହୋଇ ପଡ଼ିଲେ । ସେ ଅନ୍ୟାନ୍ୟ କର୍ମଚାରୀମାନଙ୍କଠାରୁ ତାକୁ ଭିନ୍ନ ଚକ୍ଷୁରେ ଦେଖନ୍ତି—ସେ ଯେପରି ତାଙ୍କ ଘରର ଲୋକ ।

ଦିନେ ଜୀବନ୍ ଲାଲ କୁଳମଣି ହାତରେ ଦଶୋଟି ସ୍ୱର୍ଣ୍ଣ-ଖଚିତ ମୋହର ଦେଇ କହିଲେ, "ଏଥିରେ ମନୁ (ଜୀବନ୍ ଲାଲଙ୍କ ନାତି) ପାଇଁ ଗୋଟିଏ ହାର ତିଆରି କରାଯିବ । ମୁଁ ଆନନ୍ଦ ମୂର୍ତ୍ତିକୁ କହିଛି, ସେ କାଲି ଆସି ଏହାକୁ ନେଇଯିବ । ତୁମେ ବର୍ତ୍ତମାନ ଏତକ ନିଜ ପାଖରେ ରଖିଥାଅ ।" ଏହା କହି ଦେଇ ଜୀବନ୍ ଲାଲ ଘର ଭିତରକୁ ଚାଲିଗଲେ ।

କୁଳମଣି ମୋହରଗୁଡ଼ିକ ନେଇ ନିଜ ହାତ ବାକ୍ସର ଉପର ତାକ୍‌ରେ ରଖିଦେଲା ଓ ସେଇଠାରେ ବସି କାର୍ଯ୍ୟ କରିବାକୁ ଲାଗିଲା ।

କିଛି ସମୟ ପରେ ନୀଳମଣି କଟକରୁ ଫେରି ସେଠାରେ ଉପସ୍ଥିତ ହେଲା ଓ କୁଳମଣିକୁ ଦେଖି କହିଲା, "କି ରେ କୁଳ !

ତୋର କଣ ଏତେବେଳଯାଏ କାମ ସର ନାହିଁ ? ଆଜ କେତେ ଡେଣ ହେବ ?" ଏହା କହି ମାଳମଣି ସେଠାରେ ବସିଗଲା ।

କୁଳମଣି କହିଲା, "କାମ ଆସି ସରିଲାଣି । ଟିକାଏ ବସ; ସାଙ୍ଗ ହୋଇ ଘରକୁ ଯିବା ।"

କୁଳମଣି ନିଜର ବାକ୍ସ ଖୋଲି କଣ ସବୁ କାଗଜପତ୍ର ମିଳାଉ-ଥିଲା । ଖୋଲା ବାକ୍ସ ଉପରେ ମାଳମଣିର ଆଖି ପଡ଼ିବାରୁ ସେ ହସି ହସି କହିଲା, "କିରେ ! ତୋ ବାକ୍ସରେ ତ ଆଜି ଗଦା ଗଦା ମହଜୁଦ ? ଖାଲି ଟେବୁଲ ଉପରେ ବସି କଲମ ଚଳାଇ, ଏତେ କିଛି ମିଠା ପାଇଲୁଣି ?" ଏହା କହି ମାଳମଣି ମୁଠାଏ ମୋହର ନେଇ ଏପାଖ ସେପାଖ ପରୀକ୍ଷା କରିବାକୁ ଲାଗିଲା ଓ କୁଳମଣିକୁ ମୋହର ସମ୍ବନ୍ଧରେ ନାନା ପ୍ରଶ୍ନ କରି ଅଦ୍ଭୁତ କରି ପକାଇଲା ।

କୁଳମଣି ତଥାପି କାଗଜ ଧରି ବସିଥିବାର ଦେଖି ମାଳମଣି କହିଲା, "ଆରେ ! ସେତିକି ହୋଇଯାଉ । ଯାହା ରହିଲା, କାଲି କଲେ ହେବ ନାହିଁ ? ଯେଉଁ ଦରମା ତ, ତହିଁରେ ପୁଣି ଏମନ୍ତ ରାତି ଚଳେ ମିହନ୍ତ !"

କୁଳମଣି ଦେଖିଲା, ଆଜି କିଛି କାର୍ଯ୍ୟ ହୋଇପାରିବ ନାହିଁ । ମାଳମଣି କୌଣସିଠାରେ ଏକ ମୁହୂର୍ତ୍ତ ସ୍ଥିର ହୋଇ ବସିପାରେ ନାହିଁ । ସେ ଯେତେବେଳେ ସେଠାକୁ ଆସେ ସବୁ ନଅଛଅ କରି ଦେଇ କୁଳମଣିର ନିୟମ ଶୃଙ୍ଖଳା ଆଉ ଆଲୁ ଗୁଲ୍ କରିଦିଏ ।

କପନ୍ ଲାଲ ଗମ୍ଭୀରଭାବ ଦେଖିଲେ କମାନ୍ତୁ ଛଅଟି ମୋଦର ଅଛି । କୁଳମଣିକୁ ଏଦ୍ୱାର କାରଣ ପଚାରିବାରୁ ସେ ବଡ଼ ଅପ୍ରସ୍ତୁତ ହୋଇଗଲା ।

ସେ ଆଉ କିଛି କଥା ନ କହି ବାପର ନିକଟକୁ ଦୌଡ଼ି ଆସିଲା । ସେ ମନେ କଲା, ସବୁ ଦିନ ମୋଦର ଦେଖୁଥିଲେ, ନଗ ସେପରି ଅସାବଧାନ ଲୋକ, ବୋଧ ହୁଏ ବାକ୍ସ ମଧ୍ୟରେ କେଉଁଠାରେ ଗଡ଼ାଇ ଦେଇଅଛନ୍ତି । କିନ୍ତୁ ବାକ୍ସ ତମାମ ତନ୍ନ ତନ୍ନ କରି ଖୋଜି କେଉଁଠାରେ ମୋଦର ନ ପାଇବାରୁ କୁଳମଣିର ମଥା ଘାରିଉଗଲା । ତାକୁ ଚତୁର୍ଦ୍ଦିଗ ଅନ୍ଧକାର ଦେଖାଗଲା । କଣ କରିବ ତାକୁ କିଛି ବୁଝି ବାଟ ଦିଶିଲା ନାହିଁ ।

ଏଣେ କପନ୍ ଲାଲ ଅନେକ ସମୟ ହେବାର ଦେଖି କୁଆଡ଼େ ଗଲା ବୋଲି କୁଳମଣିକୁ ଡକାଇ ପଠାଇଲେ ସେସମୟବେଳକୁ କୁଳମଣିର ଦେହ କଳାକାଠ ପଡ଼ିଗଲାଣି । ତ୍ର ଶୁଖିଯାଇ ମୁହଁରୁ ବଚନ ବାହାରୁ ନାହିଁ । କପନ୍ ଲାଲ ପୁନର୍ବ ମୋଦର କଥା ପଚାରିବାରୁ ସେ ବହୁ କଷ୍ଟରେ ଉତ୍ତର ଦେଲ "ମୁଁ ଚାରି ଖଣ୍ଡ ମୋଦରତକ ମୋ ବାକ୍ସରେ ରଖି ଦେଇଥିଲ ସବୁ ବରାବର ମୋ ପାଖରେ ଅଛି । ଆଜି ଦୁଇଟି ମୋଦ କୁଆଡ଼େ ଗଲା ମୁଁ ତ କିଛି ବୁଝି ପାରୁ ନାହିଁ ।"

କପନ୍ ଲାଲ କିଛିକ୍ଷଣ ଅବାକ୍ ହୋଇ କୁଳମଣି ମୁହଁକୁ ଅନାଇ ରହିଲେ ଓ ପରେ ସେ କାଗଜ ଭାବରେ କେଉଁଠାରେ

ମୋହର ରଖିଥିଲ, ବାକ୍ସର ଚାବି ବନ୍ଦ କରିଥିଲ କି ନା, ଇତ୍ୟାଦି ନାନା ପ୍ରଶ୍ନ କରିବାକୁ ଲାଗିଲେ । ଶେଷରେ କପ୍ତାନ୍ ମାଲ କହିଲେ, “ବାକ୍ସ ବନ୍ଦ କରି ଚାବି ତ ବରାବର ତୁମ ପାଖରେ ରଖିଛ, ଯେଉଁ ଘରେ ବାକ୍ସ ଥିଲା ତାହାର ଚାବି ମଧ୍ୟ ତୁମ ହାତରେ, ଆଉ ବାକ୍ସ ଖୋଲିଲାବେଳେ ଯେମିତି ବନ୍ଦ ଥିଲା ବୋଲି ତ କହୁଛ, ତେବେ ଜଣାପଡ଼ୁଛି ଘରଭିତରେ ବାକ୍ସ ଥିବା ମଧ୍ୟରେ କେହି ମୋହର ନେଇ ନାହିଁ । ପଥ ନେଇଥାଏ ତାହା ପ୍ରକାରୁ । ଆଚ୍ଛା, ମୁଁ ତୁମକୁ ମୋହର ଦେବାର କେତେ ସମୟ ପରେ ତୁମେ ବାକ୍ସ ବନ୍ଦ କରି ଘରକୁ ଗଲ ?”

“ପ୍ରାୟ ଅଧଘଣ୍ଟା ପରେ ।”

“ତେବେ ଏହି ଅଧଘଣ୍ଟାକ ମଧ୍ୟରେ କେହି ମୋହର ନେଇଛି । ଆଚ୍ଛା, ଏହି ସମୟ ମଧ୍ୟରେ କାହା ତୁମ ନିକଟକୁ କିଏ କିଏ ଆସିଥିଲେ କହିପାରିବ କି ?”

ଏ ପ୍ରଶ୍ନ ଶୁଣି ବିଦ୍ୟୁତ୍ ପ୍ରକାଶ ପରି ହଠାତ୍ କୁଳମଣି ମନରେ ଗୋଟାଏ ସନ୍ଦେହ ଜାଗ୍ରତ ହେଲା । ସେ ଭାବିଲା, ଆଉ ତ କେହି ସେଠାରେ ନ ଥିଲେ, କେବଳ ଭାଇ ଜମି ମୋହରଗୁଡ଼ାକ ଦେଖୁଥିଲେ । ତେବେ କଣ ଭାଇ..... ? ଏ କଥା ଭାବିଲାମାତ୍ରେ କୁଳମଣିର ମନେ ହେଲା ତା ବକ୍ଷସ୍ଥଳରେ ଯେପରି କିଏ ଗୋଟାଏ ଲୌହଶଳାକା ବିଦ୍ଧ କରି ଦେଲା । ତାହାର ମୁଖ ଅତ୍ୟନ୍ତ ମଳିନ ଦେଖାଇଲା । କି ଉତ୍ତର ଦେବ ସେ କିଛି ବୁଝି ପାରିଲା ନାହିଁ । କପ୍ତାନ୍ ମାଲ ତାର ଉତ୍ତରର ପ୍ରତୀକ୍ଷା କରି ଅଧୀର ହୋଇ ଶେଷରେ

ସେ କହିଲା, "ମୋ ସମୟରେ ସେଠା ପାଖକୁ କେହି ଆସିଥିବାର ତ ମୋର ମନେ ପଡୁନାହିଁ ।"

କୁଳମଣି ସେ ଦିନଏ ଅନୁଭୂତି ହରାଇ ଦେଉଛି, ତଥାପି ତାର ଏତା ବୁଦ୍ଧି ପାଇନେବ । ସେ କହିଲେ, "ଆଚ୍ଛା ତୁମେ ଭଲ କରି ଭାବି ମୋତେ ସବୁ ବୁଝାଇ ସଫାରେ କହ । ମୁଁ ମଧ୍ୟ ଭଲଭଳି ଏହାର ସନ୍ଧାନ ନେଉଛି । ଗୋଟିଏ ଜିନିଷ ନ ଜାଣି ମୁଁ ଛାଡ଼ିବି ନାହିଁ । ବାକ୍ସ ଭିତରୁ ଟଙ୍କା ଗଲା ଯେଉଁ – ସହଜ କଥା ନୁହେଁ ।"

କୁଳମଣି ସେ ଦିନ ଆସି ମଳମଣି ଆଗରେ ସେଦିନର କଥା ଆନୁପୂର୍ବିକ ବର୍ଣ୍ଣନା କରିଗଲା । ଦେଖିଲା, ମାଳମଣିର କୌଣସି ଭାବାନ୍ତର ଲକ୍ଷିତ ହେଲା ନାହିଁ । ସେ ପଚାରିଲା, "ଆଚ୍ଛା, ମୁଁ ଗୋଦାମକୁ ଯିବା ବାଟରେ ଆଜି କେହି ସେଠାକୁ ଆସିଥିଲେ ?"

"ନା, ମୁଁ ତ ବରାବର ଥିଲି, ଆଜି କେହି ଆସିବାର ଦେଖି ନାହିଁ ।" କୁଳମଣି ଗୋଟିଏ ନିଃଶ୍ୱାସ ଛାଡ଼ି କପାଳ ଉପରେ ହାତ ଦେଇ ବସି ରହିଲା । ମଳମଣି କହିଲା, "ଯାହାର ତ ମାଲ ଗଲା, ଗଲା । ତୁ ଏଥିପାଇଁ ଅକାରଣେ ଏତେ ବ୍ୟସ୍ତ ହେଉଛୁ କାହିଁକି ?"

କୁଳମଣି କହିଲା, "ଘଟଣା ସେପରି ହୋଇଛି, ମୋ ଉପରେ ସବୁ ସନ୍ଦେହ ପଡ଼ିବାର କଥା । ଅନ୍ୟ କାହାରିକୁ ସନ୍ଦେହ କରିବାର ତ କିଛି କାରଣ ଦେଖାଯାଉ ନାହିଁ ।" ମଳମଣି ହସି ହସି କହିଲା, "ତୁ ଗୋଟାଏ ପାଗଳ ନା କଣ ? ତୋତେ ସନ୍ଦେହ କରିବ ଏତେ ଛାତି କାହାର ?"

ଧୂମ୍ରସ୍ୱା ।

ମାଳମଣିର ବ୍ୟବହାରର କଥା ଶୁଣି କୁଳମଣି ମନେ ମନେ ଟିକଏ ଖରାପ ହୋଇ ସେଠାରୁ ଉଠି ଚାଲିଗଲା ।

ଏହାର ଦୁଇଦିନ ପରେ ଦୈବାତ୍ ମାଧବ କୃଷ୍ଣଙ୍କ ସଙ୍ଗେ କୁଳମଣିର ଦେଖା ହେଲା । ମାଧବ କୃଷ୍ଣ ରାଧାଶ୍ୟାମ ବାବୁଙ୍କର ଜଣେ ବଡ଼ ମହାଜନ । କୁଳମଣି ଜାଣେ, ବାପାଙ୍କ କାଳ ହେବା ପରେ ତାର ଅନେକ ଗୁଡ଼ାଏ ପାଉଣା ବାକି ଥିଲା । କିନ୍ତୁ ବର୍ତ୍ତମାନ ଶୁଣିଲା ସେ ମାଳମଣି ସବୁ ପରିଶୋଧ କରିଅଛନ୍ତି । ତାଙ୍କ ଟଙ୍କା ପଇସା ଥିଲା ଯେ, ତାହା ମଧ୍ୟ କାଢ଼ି ଶୁଝାଇ ଦେଲେ । ଏ କଥା ଶୁଣି କୁଳମଣି ଭାବିଲା ବର୍ତ୍ତମାନ ତ ଚାକିରି ସମୟ ନୁହେଁ, ଏତେ ଟଙ୍କା ପାଇଲେ କେଉଁଠାରୁ ? ତେବେ କଣ କଥାଟା ହେଲା ? କୁଳମଣି ସେଠାରେ ଆଉ ରହି ପାରିଲା ନାହିଁ । ଭାଇଙ୍କୁ ସନ୍ଦେହ କରିବାକୁ ପ୍ରଥମେ ତାର ଇଚ୍ଛା ବା ସାହସ ହେଉ ନ ଥିଲା । କିନ୍ତୁ ଉପାୟ କଣ ? ଘଟଣାଗୁଡ଼ାକ ତ ଆଉ ମିଥ୍ୟା ସାକ୍ଷ୍ୟ ଦେବେ ନାହିଁ ।

ରାଧାଶ୍ୟାମ ବାବୁଙ୍କ ସ୍ତ୍ରୀ କୁଳମଣିଠାରୁ ସବୁ କଥା ଶୁଣିଲେ । କୁଳମଣି ତା'ର ମନର ସନ୍ଦେହଟା ମଧ୍ୟ ତାଙ୍କ ନିକଟରେ ଗୋପନ କରି ପାରିଲା ନାହିଁ । ଶୁଣି ଦୁଃଖ, ଲଜ୍ଜା ଓ ଘୃଣାରେ ତାଙ୍କର ହୃଦୟ ବିଦୀର୍ଣ୍ଣ ହୋଇଗଲା । ହାୟ ! ଯାହାଠାରେ ସେ ଏତେ ଆଶା ଭରସା ବାନ୍ଧିଥିଲେ ତାର ଦଶା ଶେଷରେ ଏଇଟା ହେଲା । ସେ ଆଉ ସମ୍ଭାଳି ନ ପାରି ରୋଦନ କରିବାକୁ ଲାଗିଲେ ।

କୁଳମଣି କହିଲା, "ମା, ତୁ ବୃଥା ଏତେ ବ୍ୟାକୁଳ ହେଉଛୁ କାହିଁକି ? ଆମ୍ଭମାନଙ୍କ ସନ୍ଦେହ ଅମୂଳକ ହୋଇପାରେ । ହୁଏତ ସାଇ ସମ୍ପୂର୍ଣ୍ଣ ନିର୍ଦ୍ଦୋଷ । ଏହିକ୍ଷଣି ତ କିଛି ଜଣା ଯାଇ ନାହିଁ, ଖାଲି ଗୋଟାଏ ଅନୁମାନ କରିବା କଥା ।

ମା କହିଲେ, "ତୁ ମୋହର ବୁଝିଇବୁ କଣ ? ମୋ ମନ ତ ମୋତେ କହୁଛି, ଗଣ୍ଡ ଏଥିରେ ଅଛି । ଅନେକ ଦିନ ହେଲା ତାର ଚଳଚଳଣ ମୋତେ ଭଲ ଲାଗୁ ନାହିଁ । ଆଜିକାଲି ତାକୁ ଦଣ୍ଡେ ଘରେ ଦେଖିବାକୁ ପାଏନ । ନିତ ରାତିରେ ଫେରିଲୁ ଫେରୁ ଦଶଟା କି ଏଗାରଟା । ସନ୍ଧ୍ୟାଏ କଣ ଖାଇ ଶୋଇ ଅଧରାତି ପର୍ଯ୍ୟନ୍ତ ଆଲୁଅ ଜାଳି କଣ ଯେ କରୁଥାଏ, ସେ ଜାଣେ । ରୂପ ଲେଖ ତ ସବୁ ଗଲାଣି— ଦିନକୁ ଦିନ ଖାଲି ଶିନ୍ଦ ହୋଇ ଯାଉଛି । ହଁ, କାଲି ଯେମିତ ବଳିଆ କହୁଥିଲା, ତା କୁହୁଡ଼ା ପାକିଟିରୁ ଗୋଟିଏ ଟିଣ ପ୍ରୁ କେତେ ଟଇସା ଟଙ୍କା ଖସି ପଡ଼ିଲା । ଟଙ୍କା କେଲଟାଚ ପାନ୍ଥା ପାଏ ମୋ ନାକରେ । ସେ ଏତେ ପଇସା ପାଉଛି କେଉଁଠୁ ? ଆଜ କଣ କରୁଛି ସେକାଣି ? ମୋତେ ମରଣ ହେଲା ନାହିଁ ପାଞ୍ଚା ।" ଏହା କହି ସେ ପୁନର୍ବାର କ୍ରନ୍ଦନ କରିବାକୁ ଲାଗିଲେ ।

କୁଳମଣି ଆଉ କିଛି ଉତ୍ତର ଦେଇ ପାରିଲା ନାହିଁ । ତା ମନରେ ଆଉ ଅଣୁମାତ୍ର ସନ୍ଦେହ ରହିଲା ନାହିଁ । ସେ ଭାବିଲା, ବୋଧହୁଏ ଡେଣାଦାର୍‌ମାନଙ୍କର କଟ୍‌ନଥା ପଢ଼ି ନଟାର ସେ ଏପରି କରି ଦେଖାଇ ଅଛନ୍ତି । କପାଳରେ ଯାହା ଥାଏ ସବୁ ମୋତେ

ଧୂତ୍ରପ୍ରା ]

ମୁଣ୍ଡାଇବାକୁ ହେବ । ଏହାପରେ ମନକୁ ଟିକିଏ ଦୃଢ଼ କରିନେଇ କୁଳମଣି ଜଗନ୍ ଲାଲଙ୍କ ଘରଠାରୁ ବାହାରିଲା ।

ଜଗନ୍ ଲାଲ କୁଳମଣିକୁ ଦେଖି ମୁଣି ଲ୍ୟୁଟି ସମ୍ବନ୍ଧରେ ନାନା ପ୍ରଶ୍ନ କରି ଶେଷରେ ଜିଜ୍ଞାସିଲେ, "ସେ ସମୟରେ ତୁମ ନିକଟକୁ କିଏ ଆସିଥିଲା, ତୁମର କିଛି ସ୍ମରଣ ହେଉଛି ?"

କୁଳମଣି କହିଲା, "ନାଁ, ସେ ସମୟରେ ମୋ ନିକଟକୁ କେହି ଆସି ନାହାନ୍ତି । ମୁଁ ଏକା ବସି କାମ କରୁଥିଲି ।"

ଜଗନ୍ ଲାଲ ଏହି ମଧ୍ୟରେ ଅନେକ ଲୋକଙ୍କଠାରୁ ନାନା ତଦନ୍ତ କରି ଲ୍ୟୁଟିର କିଛି କୂଳ କିନାରା ନ ପାଇବାରୁ କଥାଟା ବାହାରେ କହିବାକୁ ତାଙ୍କର ମନକୁ ଦୃଢ଼ତର ହୋଇ ଉଠିଥିଲା । କୁଳମଣିର ଉତ୍ତର ଶୁଣି ସେ କହିଲେ, "ତେବେ ଦେଖୁଛି କଣ୍ଢେଇଆ କଥାରେ କିଛି ହେବ ନାହିଁ । ପୁଲିସ ହାତରେ ଏହାର ଅନୁସନ୍ଧାନର ଭାର ନ୍ୟସ୍ତ କରିବାକୁ ହେବ ।"

ଏ କଥା ଶୁଣି କୁଳମଣି ଟିକିଏ ଚମକି ଉଠିଲା । କାରଣ ପୁଲିସ ତଦନ୍ତ ହେଲେ ଆସଲ କଥାଟା ବାହାରି ପଡ଼ିବ, ଏହା ଭାବି ସେ ବ୍ୟଗ୍ରତା ସହକାରେ କହିଲା, "ଆଉ ପୁଲିସ ହାତରେ ଏସବୁ ଦିଅନ୍ତୁ ନାହିଁ । ଆପଣ ନିଜେ ତଦନ୍ତ କରି ଯାହା କରିବାର ଗୋଟାଏ ଫଇସଲା କରି ଦିଅନ୍ତୁ । ଯଦି କିଛି ଧରା ନ ପଡ଼େ ମୋ ପାଖରୁ ସେତେବେଳେ ପାଉଛନ୍ତି, ମୁଁ ଏଇଟା ହାତରୁ ସହିବ ।"

କୁଳମଣିର ସ୍ୱଭାବର ଜାଦନ୍ ମାଳଙ୍କ ଦୃଷ୍ଟିର ଅଗୋଚର ରହିଲା ନାହିଁ । ସେ କୁଳମଣିର ଅନୁରୋଧ ଶୁଣି ଟିକିଏ ସନ୍ଦିଗ୍ଧ ହୋଇ ଚିନ୍ତା କରିବାକୁ ଲାଗିଲେ । କଥାଟା ତମେ ତାଙ୍କୁ ଅଦ୍ଭୁତ ରହସ୍ୟମୟ ବୋଧ ହେଲା । କୁଳମଣିକୁ ପରୀକ୍ଷା କରିବାକୁ ତାଙ୍କର ସାହସ ହେଉ ନଥିଲେ ମଧ୍ୟ ଡାଃ ନାଏକଙ୍କର ନିର୍ଦ୍ଦେଶକୁ ସେ ଅଗ୍ରାହ୍ୟ କରିପାରିଲେ ନାହିଁ । ସେ ଭାବିଲେ, ହୁଏତ କୁଳମଣି କୌଣସି ଲୋକକୁ ରକ୍ଷା କରିବାକୁ ଚେଷ୍ଟା କରୁଛି, ନାହିଁ ତ ସେ ନିଜେ ଏ କାର୍ଯ୍ୟ କରିଛି । ଏ ରହସ୍ୟ-ଜାଲ ଭେଦ କରିବାକୁ ତାଙ୍କର କୌତୂହଳ ଆହୁରି ବୃଦ୍ଧି ପାଇଲା ।

ସେହିଦିନ ପୁଲିସ ଥାନାକୁ ଏତଲ ଢୋରଲା ।

× × × × ×

ସକାଳେ କୁଳମଣିଙ୍କ ମା ମାଳମଣିକୁ ଡାକି କହିଲେ, “ହଇରେ ମାଳୁ । ମଞ୍ଜୁଡ଼ ଲୋକ କଥା କଣ ହୋଇଛି, ଶୁଣିଲୁଣି ?”

ମାଳମଣି କହିଲା, “ହଁ ଶୁଣୁଛି, କଚେରିରେ ମାମଲା ପାଙ୍କ ଚଲୁଛି ?”

ମାଳମଣିର ଏପରି ନିଶ୍ଚିନ୍ତ ଭାବ ଦେଖି ମା'ଙ୍କ ମନରେ ବଡ଼ କଷ୍ଟ ହେଲା । ସେ କହିଲେ, “ଘଟଣା ଏମିତି ଘାଣ୍ଟି ହେଉଛି, ତୋତେ କଣ ଟିକିଏ ବାଧୁ ନାହିଁ ? ତୋର ଏସବୁ କି ଭଲ ରେ ମାଳୁ ?”

ମାଳମଣି କହିଲା, “ତୁ ବୃଥା ବ୍ୟସ୍ତ ହେଉଛୁ କାହିଁକି ? କଥାଟା ମକଦ୍ଦମା ଉପରକୁ ଉଠିଲଣି, ଭଲ ହେଲା । ତାହାହେଲେ

ହକାଙ୍କ ଅଦାଲତରେ ସମସ୍ତେ ବୁଝିପାରନ୍ତେ ଯେ, ରାଧାଶ୍ୟାମ ତାଙ୍କ ପୁଅମାନେ ଏସବୁ ଷଡ଼ଯନ୍ତ୍ରକାରୀ ଅନେକ ଉପରେ ।”

କୁଳମଣିଙ୍କ ମା ଏ କଥାରେ କି ଉତ୍ତର ଦେବେ ଠିକଣା କରିପାରିଲେ ନାହିଁ । ଏ ସମ୍ବନ୍ଧରେ ଭାଇଙ୍କୁ କୌଣସି କଥା କହିବାକୁ କୁଳମଣି ଅନେକ ଥର ଚେତାଇ ମାଙ୍କୁ ବାରମ୍ବାର ଅନୁରୋଧ କରିଥିଲେ । ସେହି କଥା ସ୍ମରଣ କରି ସେ ନୀରବ ରହିଲେ ।

ଆଜି ମୋହନ-ଚେଲୁଣ ମକଦ୍ଦମାର ଫଇସଲାର ତାରିଖ । ସେସନ କୋର୍ଟ (ଦଣ୍ଡବିଧି ଆଇନ)ର ଅପରାଧ ଧାରାର ଅଭିଯୁକ୍ତ ହୋଇ କୁଳମଣି ଆଜି ଅଦାଲତରେ ଆସାମୀରୂପେ ଉପସ୍ଥିତ । ମକଦ୍ଦମାର ଫଳ କଣ ହେବ ଜାଣିବା ଲାଗି ଅନେକ ଲୋକ ଅଦାଲତ ପ୍ରାଙ୍ଗଣରେ ଜମା ହୋଇ ଅଛନ୍ତି । ଯେଉଁ ଭଦ୍ରଲୋକମାନେ ରାଧାଶ୍ୟାମ ବାବୁଙ୍କ ଦୁଃସ୍ଥ ପରିବାରକୁ ସାହାଯ୍ୟ କରିବା ଲାଗି ଉପାୟ ସାଧନ କରିବେ ବୋଲି ନାନା ଆଲୋଚନା କରୁଥିଲେ, ସେମାନେ ମଧ୍ୟ ଚନ୍ଦ୍ରଶେଖରଙ୍କ ପ୍ରତି ମନ୍ତବ୍ୟ ଦେବାକୁ ଭୁଲି ପାରୁ ନାହାନ୍ତି । ସର୍ବତ୍ର ଏ କଥାବାର୍ତ୍ତାରୁ ସେମାନଙ୍କର ଆନ୍ତରିକତାର ଚିହ୍ନ ପ୍ରକାଶ ପାଉଅଛି । ମକଦ୍ଦମାର ପରିଣାମ କଣ ହେବ ବୁଝିପାରି କିଛି ଲୋକ ଉତ୍କଣ୍ଠାରେ ଆଜି ଅଦାଲତରେ ଉପସ୍ଥିତ ହୋଇଅଛନ୍ତି ।

ମୁଦ୍ଦେଇ ତରଫରୁ ସମସ୍ତ ସାକ୍ଷୀ ଜେରା ଶେଷ ହୋଇଅଛି । ମୁଦାଲା ତରଫର କୌଣସି ସଫେଇ ସାକ୍ଷୀ ନାହିଁ । ବର୍ତ୍ତମାନ କେବଳ ମୁଦାଲାର ଶେଷ ଜବାବ ନିଆଗଲେ ସବୁ କାର୍ଯ୍ୟ ଶେଷ ହେବ । କୁଳମଣି ଆନୁପୂର୍ବିକ ସବୁ ଘଟଣା ବର୍ଣ୍ଣନା କରିଗଲେ ଓ

ହାକମ ନଗାଟି ଗୋଟି କରି ସବୁ ଲେଖିଗଲେ । ଶେଷରେ ମୁଦେଇ ଲବଙ୍ଗର ଉକିଲ ଜ୍ଞାନଚନ୍ଦ୍ର ବାବୁଙ୍କ ସୂଚନା ଅନୁସାରେ ହାକମ ମୁଦାଲକୁ ପ୍ରଶ୍ନ କରିବାକୁ ଆରମ୍ଭ କଲେ । ଅନ୍ୟାନ୍ୟ ପ୍ରଶ୍ନ ପରେ ସେ କୁଳମଣିକୁ ପଚାରିଲେ, "ମୋହରଭରଣ ପାଇଲେ ତୁମର ସବୁ ଦେଣା ପରିଶୋଧ ହୋଇ ମାଇବ ବୋଲି ତୁମେ କାହା ଆଗରେ ପ୍ରକାଶ କରିଥିଲ ?"

ଏ କଥା ଶୁଣି କୁଳମଣି ବଡ଼ ଆଶ୍ଚର୍ଯ୍ୟାନ୍ୱିତ ହୋଇ ହରକ୍ଷ ସହକାରେ କହିଲା, "ହଁ, ଏ କଥା ମୁଁ କପନ୍ ଗଳରେ ମୋହଭର ବୃନ୍ଦାବନ ମହାନ୍ତଙ୍କ ନିରହ୍ଣାଘରେ କହିଥିଲି, ଏଥିରୁ କଣ ଆପଣ ସାବ୍ୟସ୍ତ କରୁଛନ୍ତି, ମୁଁ ମୋହର ନେଇଛି ବୋଲି ?"

ହାକମ—ନା ଆହୁରି ମଧ୍ୟ ଅନେକ ପ୍ରମାଣ ଅଛି, ତୁମ ନିଜ ପାଗ୍ୟ ତ ତୁମ ବିରୁଦ୍ଧରେ ପ୍ରଧାନ ପ୍ରମାଣ ।

କୁଳମଣି—ହଁ, ଯେତେବେଳେ ଅନ୍ୟ କହି ବାହାନ ନ ମିଳିଲା, ମୁଁ ଯେ ଏଥିଲାଗି ସମ୍ପୂର୍ଣ୍ଣ ଦାୟୀ, ତାହା ମୁଁ ସ୍ୱୀକାର କରୁଅଛି, କିନ୍ତୁ—

ଜ୍ଞାନଚନ୍ଦ୍ରବାବୁ ହାକିମଙ୍କୁ ଅନାଇ ଉତ୍ସାହରେ କହିଲେ, "ହଜୁର, ଏ ଜବାବଟା ଲେଖା ଯାଉ ।"

ପ୍ରଶ୍ନୋତ୍ତର ଲେଖା ହେଲାନୁ ଉକିଲ ମହାଶୟ ସରାମଜସୀ ଧୀର ପଶ ପାଶ୍ୱୁଁର କନ୍ଦାବୁର ଉକିଲଙ୍କ କାନରେ କହିଲେ,

ଧୂର୍ତ୍ତମୀ ।

"ନେତରଣ ପାଙ୍ଗରେ ଚଳାଇ ନେଲ ଅଧିକ ନେଆଁଟା ନ ଲଗ୍ନ ଯିବ କୁଆଡ଼େ ? କିନ୍ତୁ ନେଁ ଟାକାଟା ପାହାବେଦକ୍ ଖୁବ୍ ଖୁଲିବ ।"

ମାଳମଣୀ ଯେତେବେଳେ ଅଦାଲତରେ ପ୍ରବେଶ କଲା ସେତେବେଳକୁ କୁଳମଣୀର ଜବାବ ଶେଷ ହୋଇଛି ଓ ହାକିମ ସିରସ୍ତାନରେ ବସି ରାୟ ଲେଖୁଅଛନ୍ତି । ମାଳମଣୀ ଉଦାସୀନ ଭାବରେ ଦର୍ଶକମଣ୍ଡଳୀ ମଧ୍ୟରେ ଛିଡ଼ା ହୋଇ ଚତୁର୍ଦ୍ଦିଗକୁ ଦୃଷ୍ଟିପାତ କରିବାକୁ ଲାଗିଲା । କୁଳମଣୀର ଆଖି ମଧ୍ୟ ତାଙ୍କ ଉପରେ ପଡ଼ିଲା । ସେ ଦେଖିଲା, ତାଙ୍କଠାରେ ଚିନ୍ତା ବା ଦୁଃଖର ଲକ୍ଷଣ କେଶମାତ୍ର ନାହିଁ—ସେ ମୁଖ ଚିରକାଳ ପରି ପ୍ରସନ୍ନ ଓ ପ୍ରଶାନ୍ତ ଆଜି ମଧ୍ୟ ସେହିପରି । କୁଳମଣୀ ଆଉ ତାଙ୍କ ଆଡ଼କୁ ଅନାଇ ପାରିଲା ନାହିଁ । ତାର ଚକ୍ଷୁ ଆପେ ଆପେ ନତ ହୋଇ ପଡ଼ିଲା ।

ଦଣ୍ଡଟା କଣ ହେବ ଜାଣିବା ଲାଗି ସମସ୍ତେ ଉଦ୍‌ଗ୍ରୀବ ହୋଇ ରହିଅଛନ୍ତି । ଅଦାଲତ ଗୃହଟି ନୀରବ ନିସ୍ତବ୍ଧ । ସମସ୍ତଙ୍କ ଦୃଷ୍ଟି ଥରେ କୁଳମଣୀ ଉପରେ ଓ ଥରେ ହାକିମଙ୍କ ଉପରେ ପଡ଼ୁଅଛି । ହଠାତ୍ ବାହାରେ ଗୋଟାଏ ଗୋଳମାଳ ଶୁଣାଗଲା । ସମସ୍ତେ ଦୃଷ୍ଟି ଫେରାଇ ଦେଖିଲେ, ସ୍ୱୟଂ ଜିପନ୍ ଲାଲ ଶକତ୍ ବର୍ଦ୍ଦି ହୋଇ ଜଣକୁ ନେଇ ଜଣ ଅନୁଚର ନେଇଅଛନ୍ତି ଓ ତାଙ୍କ ପଛେ ପଛେ ଅଦ୍ଭୁତ ଗୋଟିଏ ଲୋକ ଆସୁଅଛି । ଜିପନ୍ ଲାଲ ବସ୍ତ୍ର କଣ୍ଠରେ ଲଗାଇ ଅଭିବାଦନ କରି ଏଜଲାସ୍ ନିକଟରେ ଉପସ୍ଥିତ ହେଲେ ଓ ଉତ୍ତେଜିତ ଭାବରେ ଚିତ୍କାର କରି କହିଲେ, "ହଜୁର, କୁଳମଣୀକୁ ଛାଡ଼ି ଦିଆଯାଉ, ଅସଲ ଚୋର ଧରାପଡ଼ିଛି—ସାକ୍ଷୀ ପ୍ରମାଣ ଦରକାର ନାହିଁ, ସାକ୍ଷ-

ସେହି ସମୟରେ ପଦଆ ମୋହର ଡବା ମାଗିଲା ସବୁକୁ ନେଇ ଗଲ, ଅନ୍ୟ କାହା ହାତରେ ପଡ଼ାଇବା ସମ୍ଭବ ନୁହେଁ । କିନ୍ତୁ ଯେବେ ପରେ ମେସ୍‌ରେ ହୋଟିଏ ପିଲାର ଟଙ୍କା ଚୋରି ଗଲାରୁ ସେ ଯେବ ପକାଳେ ଦୁବର ଦୁନାଡାକ୍ତରଙ୍କର ଜିନିଷପତ୍ର ଭେଦ ପେଟରେ ଖାନ୍-ତଲାସ କରୁଥିଲା ସେ ପଦଆର କେଉଁ ସିନ୍ଦୁକ ଛାବଲ ବାକ୍ସ ମଧ୍ୟରୁ ଟଙ୍କା ଓ ନବଦୁରେ ଗୁଡ଼ିଏ ମୋହର ବାହାରି ପଡ଼ିଲା । କପନ୍ ଲାଲଙ୍କ ମୋହର ଚୋରି କଥା ମେସ୍‌ର ପିଲାମାନଙ୍କୁ ଅଜଣା ନ ଥିଲା । ପଦଆର ଘରେ ଯେ କପନ୍ ଲାଲଙ୍କ ଘରେ ଥାଏ, ଏ କଥା ସେମାନେ ଜାଣନ୍ତି । କଥାଟା କଣ, ଅନୁମାନ କରିବାକୁ ଆଉ ବେଶୀ ସମୟ ଲାଗିଲ ନାହିଁ । ସେମାନେ ପାଞ୍ଚ ସାତ ମୋହର ସହିତ ପଦଆକୁ ନେଇ କିଷନ୍ ଲାଲଙ୍କ ନିକଟରେ ଉପସ୍ଥିତ ହେଲେ । କିଷନ୍ ଲାଲ ସେ ସବୁ କଥା ଶୁଣି ଅବାକ୍ ! ପିଲଆ ଲୋକ ଏପରି ଅବ୍ୟର୍ଥ ପ୍ରମାଣ ସନ୍ତୁଷ୍ଟରେ କେତେକ୍ଷଣ ହୁଁ ହାଁ ହୁଁ ହାଁ କରି ପାରିଲ ନାହିଁ । ଶେଷରେ ସବୁକଥା କହି ମୁନିବର କୃପାଭିକ୍ଷା କରିବାକୁ ଲାଗିଲ । କିଷନ୍ ଲାଲ ଆଉ ଏକ ମୁହୂର୍ତ୍ତ ବିଳମ୍ବ ନ କରି ପିଲଆକୁ ଧରି ଅଦାଲତରେ ଉପସ୍ଥିତ ହେଲେ ।

ସବୁ କଥା ଶୁଣି ହାକିମ କୁଳମଣିଙ୍କୁ ଖଲାସ ଦେଲେ ଓ ମକଦ୍ଦମାର ବିଚାର ଅନ୍ୟ ତାରିଖକୁ ମୁଲତବି ରହିଲା ।

କୁଳମଣି ଯେତେବେଳେ ବାହାରକୁ ଆସିଲା, କେହି ଆଲିଙ୍ଗନ, କେହି କରମର୍ଦ୍ଦନ ଇତ୍ୟାଦି କରି ତାକୁ ବ୍ୟତିବ୍ୟସ୍ତ କରି ପକାଇଲେ । କିଷନ୍ ଲାଲ କୁଳମଣି ପ୍ରତି ସସ୍ନେହ ଦୃଷ୍ଟି

ନିକଟର କରି ଗମ୍ଭୀର ସ୍ୱରରେ କହିଲେ, "ତୁମ ନିଜ ଦୋଷରୁ ଏତେ କାଣ୍ଡ ହେଲା । ତୁମପରି ଚତୁର ଲୋକ ଯେ ଏପରି ନିର୍ବୋଧ ସ୍ୱଭାବର କାର୍ଯ୍ୟ କରିବ, କିଏ ଏହା ଭାବିଥିଲା ? ଚୋରକୁ କଥାଟା ଗିନା ଧରି ପକାଇଲ, ନ ହେଲେ ଆଜ— । ମୁଁ ବା ଏତେ କଥା ଜାଣନ୍ତି କିପରି ?"

କୁଳମଣି କୌଣସି ଉତ୍ତର ନ ଦେଇ ଚୁପ୍ ହୋଇ ରହିଲା । ଏହପର୍ଯ୍ୟନ୍ତ ସବୁ ଘଟନା ତାକୁ ସ୍ୱପ୍ନ ପରି ବୋଧ ହେଉଥିଲା । ସେ ଯେ ଖଲାସ ହୋଇଅଛି, ଏ କଥା ସେ ପୂରା ବିଶ୍ୱାସ କରି ପାରୁ ନ ଥାଏ ।

ଶଶିଙ୍କୁ ଦେଖି କୁଳମଣିର ହୃଦୟ ଅନୁତାପରେ ଦଗ୍ଧ ହୋଇଗଲା । ତାଙ୍କୁ କଣ କହିବ, ସେ କିଛି ବୁଝି ପାରିଲା ନାହିଁ । ଉଭୟେ ସେତେବେଳେ ଏକ ପଲଙ୍କର ପାଖ ଘରେ ବସିଥିଲେ, କୁଳମଣି କହିଲା, "ଭାଇ, ମୁଁ ଗୋଟାଏ ବଡ଼ ଅପରାଧ କରିଛି, ମୋତେ କ୍ଷମା କର ।" ଏହା କହି ସେ ମାଳମଣିକୁ ପତ୍ର ଲେଖି କରିଥିବା କଥା ସବୁ କହିଗଲା ।

ଏକଥା ଶୁଣି କୁଳମଣି ଟିକିଏ ଚିନ୍ତା କରି କହିଲା, "ଏସବୁ କଥା ତୁ ମୋତେ ନ କହିବାରୁ ଏତେ ଗଣ୍ଡଗୋଳ ହେଲା । ମୁଁ ମଧ୍ୟ କେତେ କଥା ତୁମମାନଙ୍କଠାରୁ ଗୋପନ କରି ଭୁଲ କରିଛି । ଟଙ୍କା ଲାଗି ମହାଜନମାନେ ଅସ୍ଥିର କରିବାରୁ ମୁଁ ବାଧ୍ୟ ହୋଇ ସ୍ୱୀକାର କରିଥିଲି । କିନ୍ତୁ ଦେଖିଲି ଯେ, ଏ ସାମାନ୍ୟ ଟଙ୍କାରେ ଘର ଖର୍ଚ୍ଚ ଚଳା ହେଉ ଋଣଶୋଧ ହେବା ଅସମ୍ଭବ । ଏଥିଲାଗି କିଛିଦିନ ମୋତେ ଜଣେ ଟିଉସନ୍ କରିବାକୁ ହେଲା । ତା ପରେ

ପ୍ରିଣ୍ଟିଂ କମ୍ପାନୀର ମେନେଜରଙ୍କୁ ଧରାଧରି କରି ଛାପାଖାନାରେ ଖଣ୍ଡେ ଠିକା କାମ ଯୋଗାଡ଼ କଲି । ସେଠାରେ ସନ୍ଧ୍ୟା ସାତଟାଠାରୁ ଦଶଟା ପର୍ଯ୍ୟନ୍ତ କାର୍ଯ୍ୟ କରିବାକୁ ହୁଏ । ସମସ୍ତ ସମୟରେ ଘରଠାରୁ ଦାଣ୍ଡକବାଟ ଲାଗି କାମ କଲି । ଏଥିରେ ହାରାହାରି ମାସରେ ଷାଠିଏ ଟଙ୍କାରୁ କମ ମିଳେ ନାହିଁ । ଏ ଟଙ୍କାରୁ ଗୋଟିଏ ପଇସା ମୁଁ ଘରକୁ ନ ରଖି ପାଉଣା ମାନଙ୍କ ମହାଜନମାନଙ୍କୁ ଶୁଝିଦିଏ । ଏପରି ଭାବରେ ପ୍ରାୟ ଅଧିକାଂଶ ଟଙ୍କା ପରିଶୋଧ ହୋଇଗଲା । ଏହାପରେ ମୁଁ ଖଣ୍ଡେ ଦୁଇଖଣ୍ଡ ପାଠ୍ୟପୁସ୍ତକ ଲେଖିଥିଲି । ମୋର ତ ଛାପି ହୋଇବାର ବଳ ନାହିଁ । ମେନେଜର ଜଣେ କେତାଟି ଛତ୍ରଶ କମ୍ପାନୀ ତରଫରୁ ବହିଟିକୁ ଛପାଇ ଦେଲେ । ସେ ବହି ପାଠ୍ୟପୁସ୍ତକରୂପେ ମନୋନୀତ ହୋଇ ଥିବାରୁ କ୍ଷତି ଏବେ ୧୫।୨୦ ଦିନ ତଳେ ବହି ପ୍ରକାଶେ ସେ ମୋତେ ଶହେଟା ଟଙ୍କା ଦେଇଥିଲେ; କହିଥିଲେ, ନିଲାମ୍ ହେଉଥିବା ବେଳକୁ ଏ ବିଷୟରେ ଗୋଟିଏ ଭଲ ବନ୍ଦୋବସ୍ତ କରିଦେବେ । ଏ ଟଙ୍କାଟା ପାଇ ମୁଁ କେତେ ଜଣଙ୍କର ପାଉଣା ସମୁଦାୟ ଚୁକାଇ ଦେଇଅଛି । ଆଉ କେବଳ ଦୁଇ ଜଣଙ୍କର ସାମାନ୍ୟ ଟଙ୍କା ବାକି ଅଛି । ମୁଁ କେବଳ ଏଥିରୁ ତେର ଷୋଳଟା ଟଙ୍କା ବାପାଙ୍କ ଫଟୋ ଖଣ୍ଡ ଏନଲାର୍ଜ (Enlarge) କରାଇବା ପାଇଁ ହାତରେ ରଖିଥିଲି । ମା ବିରକ୍ତ ହେବେ ବୋଲି ମୁଁ ଆଜିପର୍ଯ୍ୟନ୍ତ ଏସବୁ କଥା କାହାକୁ ଫିଟେଇ କହି ନ ଥିଲି । କିନ୍ତୁ ଏଥିରୁ ଏପରି ବିପରୀତ ଫଳ ହେବ ବୋଲି କିଏ ଜାଣିଥିଲା ?"

ଏସବୁ କଥା ଶୁଣି କୁଳମଣି ନିର୍ବାକ୍ ବିସ୍ମୟରେ ଭାଇଙ୍କୁ ଚାହିଁ ରହିଲା ।

---

# ପ୍ରତିଦାନ

ସେ ଦିନ ରାତିରେ ନିଦ୍ରାର ବ୍ୟାଘାତ ହେବାରୁ ମୁଁ ବଡ଼ ଚଉକିରେ ଆସି ବାରଣ୍ଡାରେ ଶୋଇଥିଲି । ନିଦ ଯେ ଠିକ ହୋଇଥିଲା, ଏପରି ନୁହେଁ; ତେବେ ମୁଁ ଜାଗ୍ରତ ଅବସ୍ଥାରେ ନ ଥିଲି । ଏହିପରି ଅର୍ଦ୍ଧ ସୁଷୁପ୍ତି ଓ ଅର୍ଦ୍ଧ ଜାଗରଣରେ ରହି ମୁଁ କେତେ ପ୍ରକାର ଅଦ୍ଭୁତ ସ୍ୱପ୍ନ ଦେଖୁଥିଲି । ସ୍ୱପ୍ନ କଥା ମୋର କିଛି ମନେ ନାହିଁ; ତେବେ ମନଟା କିପରି ଗୋଟାଏ କରୁଣ-ଭାବରେ ପୂର୍ଣ୍ଣ ହୋଇ ଉଠିଥିଲା, ଯେପରି କି ଗଭୀର ଅଜଣା ବିଷାଦର ମେଘ ଆସି ସମସ୍ତ ହୃଦୟକୁ ଆଚ୍ଛନ୍ନ କରି ରଖିଛି । ଏପରି ସମୟରେ ଚାକର ଆସି ଡାକିଲା, "ବାବୁ, ବାବୁ, ମଧୁବାବୁ ଆସିଛନ୍ତି ।"

ମୋର ହୃତପିଣ୍ଡର ସମସ୍ତ କାର୍ଯ୍ୟ ଯେପରି ଏକେବାରେ ହଠାତ୍ ସ୍ଥଗିତ ହେଲା । ମୁଁ ଧଡ଼ପଡ଼ ହୋଇ ଚଉକିରୁ ତରବରଠା ହୋଇ ହଠାତ୍ ଚିତ୍କାର କରି ଉଠିଲି, "ଏଁ, ଏଁ, ମଧୁବାବୁ ! କେଉଁ ମଧୁବାବୁ ?"

ଚାକର କହିଲା, "ହେଡ୍ କ୍ଲର୍କ ବାବୁ ଡାକୁଛନ୍ତି ।"

"ଉଃ !"— ଗୋଟାଏ ଗଭୀର ଦୀର୍ଘ ନିଃଶ୍ୱାସ ପକାଇ ମୁଁ କିଛିକ୍ଷଣ ନୀରବ ରହିଲି । ପରେ କହିଲି, "ତାଙ୍କୁ କହିଦେ, ମୋ ଦେହ ଆଜି ଭଲ ଲାଗୁ ନାହିଁ, କାଲି ଆସିବେ ।"

ଏତକ କହି ଦେଇ ମୁଁ ପୁନରପି ଚରଣରେ ପଡ଼ିଗଲି । ମୋର କଣ୍ଠସ୍ୱର ଦ୍ୱିଗୁଣ ବେଗରେ ଉଚ୍ଚ ହେବାକୁ ଲାଗିଲା । ସମସ୍ତ ଧମନୀରେ ରକ୍ତ ଚାଞ୍ଚଲ୍ୟବାନ ଖେଳିଗଲା । ବକ୍ଷସ୍ଥଳର ଗୋଟିଏ ମୃଦୁ ସ୍ପନ୍ଦନର ଅନ୍ତରାଳ ଭେଦ କରି ବୁଦ୍‌ବୁଦ ପରି ଲହରୀକୁ ଉଠିବାକୁ ଲାଗିଲା । ଜୀବନ ଯେ ଶାନ୍ତିର ସଜ୍ୟ ଗୃହ ପୃଷ୍ଠରୁ ଧ୍ୱସ୍ତହେଉ, ଅଦ୍ଭୁତ ସ୍ପନ୍ଦନର ହୋଇ ଉଠିଲା । ଦେଶକାଳର ସମସ୍ତ ବ୍ୟବଧାନ ଘୁଞ୍ଚିଗଲା । ଅତୀତ ଜୀବନର ଗୋଟିଏ ସ୍ମୃତି ଅଙ୍କ ମୋ ଚକ୍ଷୁ ଆଗରେ ପୁନରପି ଅଭିନୀତ ହୋଇଗଲା ।

ସେ ଆଜିର ଅନେକ ଦିନର କଥା । ତା ନାମ ଥିଲା ସେଣ୍ଟୁ ମଧୁ । ଆମ୍ଭେମାନେ କଟକ କଲେଜରେ ବରାବର ଏକ ସଙ୍ଗରେ ପଢ଼ି ଆସିଥିଲୁଁ । କିନ୍ତୁ ସାଧାରଣ ଆଳାପ ପରିଚୟ ଥିଲେ ସୁଦ୍ଧା ଘନିଷ୍ଠତାରେ ଆମ୍ଭମାନଙ୍କର ଏତେ ଘନିଷ୍ଠତା ନ ଥିଲା । କଲିକତାକୁ ଆସି ଏକା ମେସ୍‌ରେ ରହିବାରୁ ସେ ଦୂରତ୍ୱ ଅନେକ ପରିମାଣରେ କମିଗଲା ।

ସେ ବର୍ଷ ବି. ଏ. ପରୀକ୍ଷାରେ ଆମେ ଯେ କେତେ ଜଣ ବିଶ୍ୱବିଦ୍ୟାଳୟର ପ୍ରଥମ ଶ୍ରେଣୀର ସ୍ଥାନ ପାଇଲୁ, ତା ମଧ୍ୟରୁ କେତେ ମାନ୍ଦ୍ରାଜ ବ୍ୟବସାୟିକ ଅନ୍ତର୍ବାଣିଜ୍ୟ କରିବା ଲାଗି ବିଦେଶର ମୁଖଅଭିମୁଖେ ଯାତ୍ରାକଲେ । ବାକି ଆମେ କେତେ ଜଣ ଏଥିରେ ସନ୍ତୁଷ୍ଟ ନ ରହି ଆଉ ବିଦ୍ୟାର ଜାହାଜ ଉପରେ ଉପାଧିର ଧ୍ୱଜା ଉଡ଼ାଇ ଗର୍ବୋନ୍ନତ ମସ୍ତକରେ ବଙ୍ଗରାଜଧାନୀକୁ ବ୍ୟବସାୟ ପାଇଁ ରୱାନା ହେଲୁଁ । ନଗର ପକାଇ ଭିତରକୁ ପାଇ ଦେଖିଲୁଁ

ଯେ ବାସ୍ତବିକ ଯାହା ଶୁଣିଥିଲୁଁ, କଳିକତା ସ୍ୱର୍ଗ ଆଉ ମୋକ୍ଷ-ସାମ୍ରାଜ୍ୟ ପ୍ରଭୃତି ନକ୍ଷତ୍ରଗଣ ଜଗତର କେନ୍ଦ୍ରସ୍ଥଳୀ, ଯେ କଥାଟା ଠିକ୍—ବରଂ ତା ଅପେକ୍ଷା ଅଧିକ ବେଶୀ। ଆମ ପୂର୍ବରୁ ଆଉ ଅନେକଜଣ ବ୍ୟବସାୟୀ ମଧ୍ୟ ଏଠାକୁ ଆସିଥିଲେ। ସେମାନେ ଏପର୍ଯ୍ୟନ୍ତ ଦ୍ୱନ୍ଦ୍ୱଳକୁ ଯେପରି ଜାଣନ୍ତି—ସେପରି ବାକୁ ମଧ୍ୟ ଆଉ ତାଙ୍କର ବେଶି ଦେଖା ନାହିଁ। ସେମାନେ ପଥପ୍ରଦର୍ଶକ ହୋଇ ଆମ୍ଭମାନଙ୍କୁ କେତେକୋଟି ବଡ଼ ବଡ଼ ଗୋଦାମ ସବୁ ଦେଖା-ଇଦେଇ କରାଇ ଦେଲେ ଏବଂ ଆମ୍ଭେମାନେ ମଧ୍ୟ କର୍ମସ୍ଥଳ ଠିକଣା କରି ନେଇ ନିଜେ ଲାଗିଗଲୁଁ। କେବଳ ଏତିକି ନୁହେଁ, ଭଦ୍ରଲୋକ ଏବଂ ବେପାରୀମାନଙ୍କ ସାହାଯ୍ୟରେ ଆମ୍ଭେମାନେ ଶୀଘ୍ର ବୁଝିପାରିଲୁଁ ଯେ, କଳିକତା କେବଳ କୁବେରପୁରୀ ନୁହେଁ, ଏହାକୁ ମର୍ତ୍ତ୍ୟର ଅମରାବତୀ କହିଲେ ମଧ୍ୟ ଅତ୍ୟୁକ୍ତି ହେବ ନାହିଁ। ଏଠାରେ ବ୍ୟବସାୟ ମଧ୍ୟ ଚାଲିପାରେ, ଆଉ ହାତଜାତ କମ୍ପାନୀର ସାହେବ, ମୁରବ୍ବୀମାନଙ୍କର ସହିତ ମିଳନଠାରୁ ଆରମ୍ଭ କରି ମହାରାଜ ଆମ୍ଭେମାନଙ୍କ ପର୍ଯ୍ୟନ୍ତ ମିଳିପାରେ। ସ୍ୱୟଂ ବୃଦ୍ଧଙ୍କର ରାଜ୍ୟାଧିକାର ନବାବ ସହିତ ଦକ୍ଷିଣା ପ୍ରଦାନ କରି ଲୁଣ୍ଠନ ଦ୍ରବ୍ୟ ମଧ୍ୟ ଆତ୍ମସାତ୍ କରି ପାରିପାରେ, କେଉଁ ବୁଦ୍ଧିମାନ୍ ବାଲ୍ଲା ଏହି ସୁଯୋଗ ଛାଡ଼ି କେବଳ ଭଣ୍ଡାରଘରେ ପଡ଼ିରହିବ?

ଆଉ ମଧ୍ୟ ନାନାଙ୍କରେ ଶୁଣାଥିଲି ଯେ, ଆମ ଦେଶର ଅନେକ ସାଧବ ପୁଅ ଏଠାକୁ ବାଣିଜ୍ୟ କରିବାକୁ ଆସିଥିଲେ ଏବଂ ମାତ୍ରଣୀ ଘରେ ଆଶ୍ରୟ ନେଇ କୌଣସି ରାଜକନ୍ୟା ପକ୍ଷେ ଦ୍ୟୁତକ୍ରୀଡ଼ାରେ ସର୍ବସ୍ୱ ହାରି ଶେଷରେ ଘରକୁ ଫେରିବା ନବଳେ

କେତେଗୁଡ଼ାଏ ଭେଜାଲ ମାଲ୍‌ସବୁ ବୋଇତ ବୋଝାଇ କରି ଷ୍ଟେଟ୍‌ସକୁ ପଠାଇଲେ । କିଛି ଦିନ ମାଲ କାଟତି ହୋଇଗଲା ସତ ( ଦୁନିଆରେ ସବୁ ମାଲର କାଟତି ଅଛି ), ତେବେ ସେଠାର ଖରିଦ୍ଦାରମାନେ ବୁଝିପାରିଲେ ଯେ ସେ ସବୁ ସଚ୍ଚା ମାଲ ନୁହେଁ । ପୂର୍ବରୁ ଯେତେ ଅର୍ଡର ହୋଇଥିଲେ ସୁଦ୍ଧା ସକଳ ଜିନିଷର ନେଇ ମନ୍ଦାଲବା ଆମ୍ଭମାନଙ୍କ ପକ୍ଷରେ ବଡ଼ ଦୁଷ୍କର ହୋଇ ଉଠିଲା ଏବଂ ଆମ୍ଭେମାନେ ଶେଷରେ ଗୋଟି ଗୋଟି ହୋଇ ପଣ୍ୟ ନେଇ ଯାଇ ମାଲ୍‌କଣୀ ଘରେ ରୁଣ୍ଡ ହେଲୁଁ । ସେହି ବ୍ୟବସାୟରେ କେହି ତେବେ ଲାଭବାନ୍ ହୋଇ ନାହିଁ, ଆମ୍ଭ ବା ତୁମ୍ଭ କଥା କଣ ? ଘରଠାରୁ ଖବର କଲ, ଏଠାରେ ମାଲ ପେଟରି ଖୋଲିଲ, ମୁଁ ଦେଶକୁ ଫେରିଲେ ଦଶଗୁଣ ଲାଭ ହେବ, ଅତଏବ ଅଳ୍ପ ମୂଳଧନ ଆବଶ୍ୟକ ।

ସବୁ ଦଳରେ, ସବୁ ସମାଜରେ ଗୋଟା କେତେ ଗୋଠଜଗା ଥାନ୍ତି । ଇତିହାସ ପୁରାଣ ସମସ୍ତେ ଏହାର ସାକ୍ଷୀ । ଆମ ଦଳରେ ମଧ୍ୟ ଠିକ୍ ସେହିପରି । ସେ ବଳଦଆଡ଼ାରୁ ଶାଣିଆ ଦୈର୍ଘ୍ୟନ୍ କାର୍ଯ୍ୟ କରି ଆସିଛି । ଅତଏବ ସେ ବ୍ୟବସାୟ କଥା ଆଉ କହି ଜାଣେ ନାହିଁ ।

ସେ ଜଣକ କେବଳ ଗୋଦାମକୁ ଯାଇ ଖାତା ଜମା କରି ଆସେ ଏବଂ ରାତିରେ ଘରକୁ ଆସି ଲୁଣ ତେଲ ଜିନିଷର ଖାତା ମିଳାଇ ମିଳାଇ ଶୋଇପଡ଼େ । ତାକୁ କେତେ କହି ପଚାରିଲେ ସେ କହେ, "ଭାଇ, ଉଦାସୀପଣର ଜାହାଜ ଖବରରେ ଭାଗ

କଅଣ ? ମୁଁ ବ୍ୟବସାୟ କରିବାକୁ ଆସିଛି, ବ୍ୟବସାୟ କରିବି, ମୋର ନାତିନାତି ସନ୍ତାନଙ୍କର କି ଆବଶ୍ୟକ ?"

ପ୍ରକୃତରେ କହିବାକୁ ଗଲେ, ଆମ୍ଭେମାନେ ସେପରି କଲେଜର କେବଳ ତାଙ୍କରେ Percentage (ଶତକଡ଼ା ଯେତେକ ରଖିବା ଦରକାର ସେତିକ ) ମାତ୍ର ରକ୍ଷା କରି ଡ୍ରମାଟିକ କଣଠାରୁ ଆରମ୍ଭ କରି ରଙ୍ଗମଞ୍ଚପର୍ଯ୍ୟନ୍ତ ସବୁଠି ବଡ଼ଲୋକଙ୍କ ବହୁଦର୍ଶିତା ଅର୍ଜନ କରିବାକୁ ଲାଗିଲୁ, ଏକଦେଶଦର୍ଶୀ ମଧୁ ସେହିପରି ମୁଣ୍ଡରେ ଝୁଣ୍ଟି ବାନ୍ଧିଦେଇ କେବଳ ମାଲ ଦେଖାଇବାକୁ ବ୍ୟସ୍ତ ରହିଲା । ମଧୁର ଅଭିଯୋଗ ଯେଉଁଠି ତା ପ୍ରତି ଆମ୍ଭମାନଙ୍କର ବଡ଼ ଦୟା ହୁଏ ଏବଂ ତାହାର କର୍ତ୍ତବ୍ୟନିଷ୍ଠାରେ ଆମର ସେ ଟିକିଏ ଈର୍ଷା ନ ହୁଏ, ଏପରି ନୁହେଁ । ଜମେ ମଧୁ ସମସ୍ତଙ୍କର ଅଟା ବନ୍ଧୁର ହାସ୍ୟ ପରିହାସର ଲକ୍ଷ୍ୟସ୍ଥଳ ହୋଇ ଉଠିଲା । ଆମ ସେପରି ଯୋଉ ବୁଢ଼ ଦେବଜ୍ଞାନ ଶକ୍ତି ଏବଂ ଲକ୍ଷ୍ୟପଥାଗ୍ରତରେ ନିଜ ନିଜର ଲକ୍ଷ୍ୟସାଧନ କୌଶଳଟା ପରୀକ୍ଷା କରି ନେଉଥିଲୁ । ଲକ୍ଷ୍ୟଟା କେଉଁ ଠିକ୍ ଥିଲା ହୋଇପାରେ ମୁଖା ସର୍ବଦା ସ୍ଥିର ଓ ଚଞ୍ଚଳ ରହୁଥାଏ । ମଧୁକୁ ବଦନ ଦେଖି ଖିଲ୍‌କେନ୍ଦ୍ର ନଷ୍ଟକରିବାର ଦେଖି ନାହିଁ, ବରଂ ଅନେକ ଥର ତା ଉପରେ ସମସ୍ତଙ୍କର ସମ୍ମିଳିତ ଚେଷ୍ଟା ବ୍ୟର୍ଥ ହେବାର ଦେଖି ଆମ୍ଭେମାନେ ଅପ୍ରସ୍ତୁତ ହୋଇଛନ୍ତି । ସମ୍ଭବ। ମୁଣ୍ଡଟା ଅନେକ ପରିମାଣରେ ମଧୁର ପ୍ରକୃତିଗତ ଦେହଲ ବୃକ୍ଷ ଏ ସ୍ଥଳରେ ବାଧ ହୋଇ ତାକୁ ନିସ୍ତବ୍ଧ ଅବଲମ୍ବନ କରିବାକୁ ଦେଲେ । କୌଣସି କଥାରେ ମଧୁ କାହିଁ ପ୍ରତିବାଦ କଲେ ନାହିଁଟା ଆମ୍ଭମାନଙ୍କୁ ବଡ଼ ଅସହ୍ୟ

ଘୋଷଣା କରନ୍ତି । ଯେଉଁ ମସ୍ତିଷ୍କବଳରେ ମନୁଷ୍ୟ ଗୋରୁମାନଙ୍କର କାନ୍ଧରେ ଲଙ୍ଗଳ ଲଦାଇ ତାଦ୍ୱାରା ଭୂମି କର୍ଷଣ କରେ, ଯେଉଁ ମସ୍ତିଷ୍କବଳରେ ଘୋଡ଼ା ପାଟିରେ ଲଗାମ ଦେଇ ମନୁଷ୍ୟ ତା ଉପରେ ସବାର ହୁଏ, ସେହି ମସ୍ତିଷ୍କବଳରେ ଆମେମାନେ ମଧୁ ଉପରେ ଜବରଦସ୍ତି ପରିଶ୍ରମାର୍ଜିତ କରି ଷଟ୍‌ପଦଙ୍କର ସ୍ୱଳ୍ପ ଶାନ୍ତ ଜୀବନକୁ ବିନାଶ କରିପ କରି ନେଉଁ । ସେହି ଅପହୃତ ପଦାର୍ଥକୁ ମଧ୍ୟ ଯଦି ଅଗ୍ରାହ୍ୟ କରେ ତାହାହେଲେ ତାହାଠାରୁ ବଳି ଅସ୍ୱାଭାବିକ କଥା ଆଉ କଣ ଅଛି ? ମଧୁ ଜନ୍ତୁ ଏଥିରେ ଆପତ୍ତି ସ୍ୱତନ୍ତ୍ର ହୁଏ ନାହିଁ, ଏପରି କି ଅନେକ ଥର ମୁଁ ଆମମାନଙ୍କ ସମ୍ପର୍କ ସେ କୌତୂହଳରେ ଦେଖାଉଛନ୍ତି ।

କାହିଁକି କେଜାଣି, ମୋତେ ମଧ୍ୟ ଟିକିଏ ବଡ଼ ଦୁଃଖ ହୁଏ ଏବଂ ସେମାନଙ୍କର ମନ ମିଠାଇ ଦେବା କଥା ମଧ୍ୟ କହେ । ତାହା ବୋଲି ମୁଁ ଯେ ଅନ୍ୟମାନଙ୍କ ଅପେକ୍ଷା ଏତକ ପାଳିବାର ବେଶି ଉପଯୁକ୍ତ ତାହା ନୁହେଁ; ବରଂ ମଧୁକୁ ଅପହୃତ କରିବା ଲାଗି ନୂତନ ନୂତନ ଉପାୟ ଉଦ୍ଭାବନ କରିବାରେ ମୁଁ ସର୍ବାପେକ୍ଷା ଅଗ୍ରଣୀ । ତେବେ ମୁଁ ପ୍ରତ୍ୟକ୍ଷରେ ମଧୁ ପ୍ରତି ବିଶେଷ କିଛି ଅତ୍ୟାଚାର କରେ ନାହିଁ । ଆଉ ବାସ୍ତବିକ ମଧୁ ମଧୁର ଦୁରବସ୍ଥାରେ ମୋର ମନରେ ତା ପ୍ରତି ସମସ୍ତ ସମବେଦନାର ବନ୍ୟା ହୁଏ । ଅନ୍ୟାନ୍ୟମାନେ ଯେ କୌଣସି ମତ ଅଭିପ୍ରାୟରେ ମଧୁ ପ୍ରତି ଏପରି ବ୍ୟବହାର କରନ୍ତି, ତାହା ନୁହେଁ; ବରଂ ଭିତରେ ସମସ୍ତଙ୍କର ତା ପ୍ରତି ଗୋଟାଏ ସ୍ୱାଭାବିକ ଆକର୍ଷଣ ଥାଏ । କେବଳ କୌତୂହଳ ଦେଖିବା ଲାଗି ସମସ୍ତେ ଯୋଗ ଦିଅନ୍ତି ଏବଂ ସ୍ୱତନ୍ତ୍ରଭାବେ ମଧ୍ୟ ଅନ୍ୟ କୌଣସି ପ୍ରସଙ୍ଗରେ

ଆମ୍ଭମାନଙ୍କର ଏତେ ଆମୋଦ ହୁଏ ନାହିଁ । ଏହାପରି ପ୍ରମୋଦ ଆହ୍ଲାଦରେ ଆମ ମେସ୍‌ଟି ସର୍ବଦା ଗମଗମ ଥାଏ ।

ଗ୍ରୀଷ୍ମ ଛୁଟି ହେବାକୁ ଆଉ ବେଶି ଦିନ ନାହିଁ । ସ୍ନେହର ଶାନ୍ତିମୟ ଜନ୍ମଭୂମିକୁ ଫେରିଯିବା ଆଶାରେ ଆମମାନଙ୍କ ପଢ଼ାପଢ଼ିର ଯେ ଶିଥିଳ ବନ୍ଧନଟି ଥିଲା, ତାହାକୁ ଛିଣ୍ଡାଇ ଦେଇ ପୂର୍ଣ୍ଣିରେ ଜଳାଞ୍ଜଳି ସହର ତମାମ୍ ଖୁଜାପଣ ପଣ ଘାଣ୍ଟିଣ ଖାଉଛୁ । କେବଳ ମଧ୍ୟ ନ ଥିବାରୁ ମନଲକ୍ଷ୍ୟ ଖୋଲଟଣ ଜମି ପାରୁ ନାହିଁ । ବାସ୍ତବିକ ମଧୁର ଅଭାବକୁ ଆମ୍ଭେମାନେ ଅନ୍ତରର ସହିତ ଅନୁଭବ କରୁଛୁ ।

ଦିନେ ସନ୍ଧ୍ୟାସମୟରେ ମୁଁ ଓ ବିଶ୍ୱନାଥ ଷ୍ଟେସନ ଅଭିମୁଖେ ବୁଲି ଯାଇଥିଲୁଁ । ଫେରିବା ସମୟରେ ଡାବତ୍ତାପୋଲ ଛକରେ ଟିକିଏ ଛୁଟି ହୋଇ ନଯନଜଳରେ ଚନ୍ଦ୍ରକିରଣର ଲୀଳା ଦେଖୁଥିଲୁଁ, ଅନ୍ୟାନ୍ୟ କଥା ପରେ ବିଶ୍ୱନାଥ କହିଲା, "କାଲି ଅପ୍ରେଲ ପହିଲା ନା ?" ମୁଁ କହିଲି, "ହଁ, କାହିଁକି ?"

ବିଶ୍ୱନାଥ କହିଲା, "ଏଥର ମଧ୍ୟ ଘରକୁ ବୁଲିପାଇ All fool's day ଟା ମାଟି କରି ଦେଲୁ ।"

ମୁଁ କହିଲି, "ଆରେ ପାଗଳ ର ! ବର୍ଷକର ଗୋଟାଏ ଦିନ କଅଣ ଭୁଲିହାଟରେ ଭୁଲିଯିବ ?" ପରେ ମୁଁ ଟିକିଏ ନୀରବ ରହି କହିଲି, "ଅଚ୍ଛା, ଗୋଟିଏ କାମ କଲେ ତ ହୁଅନ୍ତା, କୌଣସି ପ୍ରକାରେ ତାକୁ ଠକିବେ ଏବେ ଏ ସମୟରେ କଲିକତାକୁ ଟାଣି

ଅନୁପସ୍ଥିତ ।

ଆଣନ୍ତୁ ଅଛି ତାହାବଦଳେ ଘର ମଜା ବୁଝନ୍ତୁ । ସେ କୌଣସି ପ୍ରକାରେ ନାଲୁ ଅପ୍ରସ୍ତୁତ କରିବାର କଥା କି ?" ଜଗନ୍ନାଥ କହିଲେ, "କାନ୍ତୁ ମଧୁ ସ୍ୱରର ଅଧିକବ ମଧୁର ବଚନ କାହିଁ ଅଛି ମାଁରିବ କି ?"

ମୁଁ କହିଲି, "ଆଚ୍ଛା, କାଲି ଏହାର ଉପାୟ କରିବା ।" ଏହିପରି କଥାବାର୍ତ୍ତା ହୋଇ ଆମେମାନେ ବସାକୁ ଫେରି ଆସିଲୁଁ ।

ତହିଁ ଆରଦିନ ମୁଁ ଏହି ପତ୍ରଖଣ୍ଡି ଲେଖି ଜଗନ୍ନାଥକୁ ଦେଖାଇଲି :—

ଭାଇ ମଧୁ,

ମୁଁ ଗୋଟିଏ State Scholarship (ସରକାରୀ ବୃତ୍ତି) ପାଇ କଲେଜ ପାଉଛି । Scholarship (ବୃତ୍ତି) ପାଇବାର ମୋଟଣ୍ଡ କିଛି ଆଶା ନ ଥିବାରୁ ମୁଁ ତାହାଙ୍କୁ ନ କହି ଖଣ୍ଡେ Application (ଦରଖାସ୍ତ) ପକାଇ ଦେଇଥିଲି । ଭଗବାନଙ୍କ କୃପାରୁ ବୃତ୍ତି ମଞ୍ଜୁର ହୋଇଛି । ମୁଁ ଏହି ୮ ତାରିଖ ଦିନ ଦଶମ୍ ମେଲରେ କଲିକତା ଯାଉଛି । ମେଲ୍‌ର ପ୍ରାପ୍ତ ସମୟରେ ସଭିଙ୍କୁ ଯୁଲିସେଲେଣି । ମୁଁ ଏହି କେତୋଟା ଦିନ ଅନ୍ୟ କୌଣସି ମେସ୍‌ରେ ରହି କଟାଇ ଦେବି ।

ଭାଇ ! ଏହିକ୍ଷଣି କେତେକ ବର୍ଷ ଘୁଙ୍କିଦଣ୍ଡକୁ ଫେରିବାର କୌଣସି ଆଶା ନାହିଁ । ଭବିଷ୍ୟରେ କଅଣ ଅଛି ପ୍ରଭୁ ଜାଣନ୍ତି । ଦୂରଦେଶ ଛାଡିବା ପୂର୍ବରୁ ତମକୁ ଥରେ ଦେଖି ପାରିଲେ କୃତାର୍ଥ

ତୁଅନ୍ତୁ । କିନ୍ତୁ ତମେ କଉଣ ସତେ ଏ ଅନୁରାଗ ପାଇଁ ସେତେ ତ୍ୟାଗ ସ୍ୱୀକାର କରିବ ? ହାୟ ତମ ଇଚ୍ଛା !

ତୁମର କଥାଟାକୁ ନିକଟ ମନରେ ରଖିଥିବି । ମୁଁ ବର୍ତ୍ତମାନ ବଡ଼ ବ୍ୟସ୍ତ ଥିବାରୁ ଆଉ କିଛି ଲେଖି ପାରୁ ନାହିଁ । ପରେ ଆଉ ସବୁ । ଇତି ।

ତମର ସ୍ନେହର
ଇନ୍ଦ୍ରମଣି

ପତ୍ରଖଣ୍ଡି ପଢ଼ିସାରି ବିଶ୍ୱନାଥ କହିଲା, "ବାଃ, ବେଶ୍ ଲମ୍ବା ସୁର ବାହାର କରିଛ । ତେବେ ମଧୁର ସ୍ୱପ୍ନପର ଦିନ ତମ ପଛରଟା ହୋଇ ନାହିଁ । ସେ କଣ ସତେ ସେ ମାତ୍ରା ଛାଡ଼ି ଏତେ ବାଟ ଆସିବ ? ହଉ, ଚିଠି ଖଣ୍ଡେ ତ ଦେଲେ ହବ । ଦେଖାଯାଉ ।"

ସେହି ଦିନ ମୁଁ ନିଜେ ଯାଇ ଚିଠିଖଣ୍ଡ ଡାକଘରେ ପକାଇ ଦେଇ ଜ୍ୟୋତ୍ସ୍ନାଲୋକରେ ବସାକୁ ଫେରି ଆସିଲି ।

× × × ×

ସେ ସବୁ କଥା ମୋର ଆଜି ଆଉ ମନେ ନାହିଁ । ଘଟନାକ୍ରମେ ସେଦିନ ୮ ତାରିଖ ଦିନ ଜଣେ ବନ୍ଧୁଙ୍କୁ ଛୁଟି ଦେବା ଲାଗି ମୁଁ ଷ୍ଟେସନକୁ ଯାଇଥିଲି । ଟ୍ରେନ ଛାଡ଼ିବା ପରେ ମୁଁ ଗୋଟାଏ ସିଗାରେଟ୍ ଟାଣି ଟାଣିକା ଏକାକୀ ଧୀରେ ମନରେ ଷ୍ଟେସନ ଭିତରୁ ବାହାରି ଆସୁଛି, ସେହି ସମୟରେ ର୍ୟାପ୍ ଆଲୁଅରେ ଦେଖିପାରିଲି ଯେ, କେ ପ୍ଲାଟରେ ଜଣେ ଲୋକ ଶୋଇଛି ଓ ଆଜି କେତୋଟି ଆମ ଦେଶର ଲୋକ ତାକୁ ଘେରି ଉତ୍ସୁକ ଭାବରେ

ବସି ଅଛନ୍ତି । କଥାଟା କଅଣ ବୁଝିବା ଲାଗି ମୋର ଟିକେ କୌତୂହଳ ହେଲା । ମୁଁ ନିକଟକୁ ଯାଇ ଯାହା ଦେଖିଲି, ମୋ ଚକ୍ଷୁ ସ୍ଥିର ହୋଇଗଲା । ମୁଁ ଯେ ମଧୁକୁ ଏପରି ଅବସ୍ଥାରେ ଦେଖିବି, ଏହା ମୋହର କଳ୍ପନାର ଅଗୋଚର ଥିଲା । ଦେଖିଲି, ମଧୁ ଅର୍ଦ୍ଧନିମୀଳିତ ନେତ୍ରରେ ଅଚେତନ ଅବସ୍ଥାରେ ତଳେ ଶୋଇଛି ଓ ଗୋଟିଏ ଲୋକ ତା ପାଖରେ ବସି କାନ୍ଦୁଛି । ମଧୁର ପାଣ୍ଡୁର ମୁଖମଣ୍ଡଳରେ ଗୋଟିଏ ବିଷାଦର କାଳିମା ଚଢ଼ିଯାଇଅଛି । ପ୍ରଥମେ ମୋତେ ଏହା ସମସ୍ତ ପ୍ରହେଳିକା ପରି ବୋଧ ହେଲା । ଗତ ଦିନ ସମସ୍ତ କଥା ସ୍ମରଣ ହେବାରୁ ମୋର ପଞ୍ଜରହାଡ଼ କଡ଼ମଡ଼ହୋଇ ମୁଚୁଡ଼ିଗଲା ପରି ବୋଧ ହେଲା ।

କଣ ହୋଇଛି, ଏହାର କାହାରିକୁ ପଚାରି ବୁଝିବାକୁ ମୋର ଇଚ୍ଛା ନ ଥିଲା । ଶେଷରେ ମୁଁ ହୃଦୟର ସମସ୍ତ ବଳ ସଂଗ୍ରହ କରି ଗୋଟିଏ ଲୋକକୁ ପଚାରିବାରୁ ସେ ଯାହା କହିଲା, ସବୁ କଥା ମୋ ମଗଜରେ ପଶିପାରିଲା ନାହିଁ । ତା କଥାରୁ କେବଳ ମୁଁ ଏତିକି ବୁଝିଲି ଯେ କୌଣସି ବନ୍ଧୁ ସଙ୍ଗେ ଦେଖା କରିବା ଲାଗି ମଧୁ ସେ ଦିନ ସକାଳ ଗାଡ଼ିରେ ଆସି ଷ୍ଟେସନରେ ପହଞ୍ଚିବା ସମୟଠାରୁ ତାକୁ ହଇଜା ଧରିଛି । ତାଙ୍କ ଗ୍ରାମର କେତୋଟି ଲୋକ ଫେରିବାରୁ ତାକୁ ଷ୍ଟେସନ ନିକଟରେ ଏପରି ଅବସ୍ଥାରେ ଦେଖି ତାର ଯଥାସାଧ୍ୟ ସେବା ଶୁଶ୍ରୂଷାରେ ଲାଗିଛନ୍ତି ।

ଏ କଥା ଶୁଣି ମୋ ମୁଣ୍ଡ ଉପରେ ଯେପରି ଆକାଶ ଭାଙ୍ଗି ପଡ଼ିଲା । ମୁଁ ଚିତ୍ରାର୍ପିତ ପ୍ରାୟ ଥକାମରା ହୋଇ ଛିଡ଼ା ହୋଇଗଲି ।

ମୋ ମାଦକତାର ପ୍ରତ୍ୟେକ ଟଳମଳ ହେବାକୁ ଲାଗିଲା । ମୁଁ ଜଣେ କରଣ, କୁଅଁଠେଇ ପିଲା, କଣ୍ଠ ସ୍ଥିର କରି ନ ପାରି ଗୋଟିଏ ଝୁଲାକୁ ଧରି ତା ଉପରକୁ ଆଉଜି ପଡ଼ିଲି ।

କିଛି ସମୟ ପରେ ଗୋଟିଏ ଝଙ୍କାର ଶୁଣି ମୋର ଟିକିଏ ଚୈତନ୍ୟ ହେଲା । ଗୋଟିଏ କେଉଁଠାରୁ ବୁଝିଲି ଯେ, ବେଗୀର ନୀଳମଣି ଉଠି ସେ ଝଙ୍କାର କରୁଅଛି । ପୁନରାୟ ଶୁଣି ପାରିଲି, ମଧୁ ଝଙ୍କାର କରି ଉଠିଲା, "ଏଁ, ଚମ୍ପେ, ମେଳ କେବେଠବେଳେ ହେବ ?—ହଁ, ଆଜି କେଉଁ ନକ୍ଷତ୍ର ଅଛି—ଉତ୍ତମଣି ଆସିବଣି ? —ଯାଉ ଯାଉ ।" ମଧୁର ଗୋଟିଏ ଗୋଟିଏ କଥା ମୋର ମର୍ମସ୍ଥଳରେ ଗୋଟିଏ ଗୋଟିଏ ଶର ଭଳି ଫୁଟିଗଲା । ମୁଁ ଆଉ କେବଳି ସେଠାରେ ରହି ପାରିଲି ନାହିଁ । ସେଥିମଧ୍ୟରୁ ଗୋଟିଏ ଲୋକ ମୋର ଏପରି ଅବସ୍ଥା ଦେଖି ମୋର ପରିଚୟ ଜାଣିବାକୁ ଚାହିଁ ପାଖେ ଆସିଲା । ମୁଁ ତାକୁ କିଛି ନ କହି ଦ୍ରୁତଗତିରେ ପଦାର ଆଡ଼କୁ ଚାଲିଗଲି । ଯାହା ଲାଗି ମଧୁର ଏ ଦଶା ମୁଁ ସେ ସେହି ମାଧୁରୀ ନାରିଲି, ଏ ଲୋକଟି ମାଗଣରେ ମୁହଁ ଖୋଲି ଏତିକି କହିବାକୁ ମୋର ସାହସ ହେଲା ନାହିଁ ।

ସେ ସମୟରେ ମନର ଭାବ ଲେଖନୀ ମୁଖରେ ପ୍ରକାଶ କରିବା ମୋ ଶକ୍ତିର ଅତୀତ—ତୋର ଜାହିଁନ, ସେପରି ଭାଷା ଏମର୍ଯ୍ୟାଦା ଜଗତରେ ସୃଷ୍ଟି ହୋଇ ନାହିଁ । ଅମର ମାନବ ଶାସ୍ତ୍ରରେ ଆଉ କି ପ୍ରାୟଶ୍ଚିତ୍ତର ବ୍ୟବସ୍ଥା ଅଛି, ମୁଁ ଜାଣେ ନାହିଁ । କିନ୍ତୁ ମୋର ସେହି ଏକ ମୁହୂର୍ତ୍ତର ପ୍ରାୟଶ୍ଚିତ୍ତ ନିକଟରେ ଅମର ଜବକଲ୍ପିତ

ଚଉରାଶି ନରକର ଯନ୍ତ୍ରଣା ବୋଧହୁଏ ଅତି ତୁଚ୍ଛ । ସେ ସମସ୍ତର କଥା ଦୂରେ ଥାଉ, ତମ ସହରରେ ତ ଏତେ ଯାତନା ଭରି ରହି ଅଛି, ଦେଖି ଥରେ ଏ ଜ୍ୱାଳାମୟୀ ପୃଥ୍ୱୀର ଆତ୍ମାର ଜ୍ୱାଳା – ଦେଖିବା ଦେଖି ତମର କେତେ ଶକ୍ତି ! ତମର କେତେ ବୀର୍ଯ୍ୟ !

ମୁଁ ଯେତେବେଳେ ସହରର ଭିତରେ ପ୍ରବେଶ କଲି, ସହସ୍ର ସହସ୍ର ମକର, କୁମ୍ଭୀର ଯେପରି ମୋତେ ଗ୍ରାସ କରିବା ଲାଗି ମୁଖ ବ୍ୟାଦାନ କରି ଦୌଡ଼ିଲେ । ମନୁଷ୍ୟର ଟିକିଏ ହସ, ଚଶୀର ଟିକିଏ ଗାନ, ମୋର ମର୍ମସ୍ଥଳ ପର୍ଯ୍ୟନ୍ତ ଭେଦ କରି ମୋତେ ଉପହାସ କରିବାକୁ ଲାଗିଲେ । ମୁଁ ବଜାର ବଜାର, ଗଳି ଗଳି ଯେତେ ଦୌଡ଼ିଲେ ହେଁ ଏ ସବୁର ଦୁରନ୍ତ କବଳରୁ ନିଜକୁ ରକ୍ଷା କରି ପାରିଲି ନାହିଁ ।

ସେ ସମୟରେ ମୁଁ ଦର୍ପଣ ଧରି ମୋର ଚେହେରା ଦେଖି ନାହିଁ, କିନ୍ତୁ ମୁଁ ଯେତେବେଳେ ଡାକ୍ତରଙ୍କୁ ରାସ୍ତାରେ ଧରି ଷ୍ଟେସନ ନିକଟରେ ଆସି ପହଞ୍ଚିଲି, ଯେଉଁ ଲୋକମାନେ ମଧୁର ଶୁଶ୍ରୂଷା କରୁଥିଲେ, କେହି ମୋତେ ଚିହ୍ନି ପାରିଲେ ନାହିଁ । ପରେ ଜାଣି ପାରି ଯେତେବେଳେ ମୋର ପରୋପକାର-ବ୍ରତର ଭୂୟସୀ ପ୍ରଶଂସା କରିବାକୁ ଲାଗିଲେ, ମୋର ଅନ୍ତଃକରଣରେ ଅସଂଖ୍ୟ ଶେଳ ବିଦ୍ଧ ହୋଇଗଲା ।

ମଧୁର ବିଛଣା ପର୍ଯ୍ୟନ୍ତ ଯିବାକୁ ମୋର ସାହସ ହେଲା ନାହିଁ । ରୋଗୀର ଅର୍ଦ୍ଧମୁଦ୍ରିତ ନେତ୍ରଦ୍ୱୟରୁ ଦୁଇଟି ଜ୍ୟୋତିର

ଚେଷ୍ଟା ଅଗ୍ନି ଦେହରେ ମୋତେ ଦଗ୍ଧୀଭୂତ କରିବାକୁ ଲାଗିଲା । ଡାକ୍ତର ଏମ୍ବୁଲେନ୍ସ କଅଣ ଗୁଡ଼ାଏ ପରୀକ୍ଷା କରି ଯେତେବେଳେ ମୋତେ ଆସି କହିଗଲେ ଯେ, "ରୋଗୀର ଅବସ୍ଥା ଜଟିଳ, ଆଉ କୌଣସି ଆଶା ନାହିଁ ।" ମୁଁ କାନରେ ଆଙ୍ଗୁଳି ଦେଇ ସେଇଠାରେ ବସିଗଲି । ତା ପରେ କଅଣ ଘଟିଲା ମୋର ସ୍ମରଣ ନାହିଁ ।

•,

ସେହି ଦିନଠାରୁ ମୋର କଲିକତାଠାରୁ ଦୋକାନପାଟ ଉଠିଲା ।

---

# ମୁକ୍ତି

ଦୂର ବିଦେଶରେ ତିନି ଚାରି ବର୍ଷ ଅଧ୍ୟୟନ କଲା ପରେ ଯେତେବେଳେ ଗୋପାଳ ବାବୁ ଘର ପାଖରେ ଖଣ୍ଡିଏ ଚାକିରି ହେବାର ସମ୍ବାଦ ପାଇଲେ, ତାଙ୍କ ମନ ଆନନ୍ଦରେ ଉତ୍ଫୁଲ୍ଲ ହୋଇ ଉଠିଲା । ଉଦ୍ଦାମପୂର୍ଣ୍ଣ ଉଚ୍ଛ୍ୱାସରେ ତାଙ୍କ ହୃଦୟର ଅନ୍ତର କନ୍ଦରରେ ପ୍ରାର୍ଥନାର ଗୋଟିଏ ଝରଣା ଖୋଲିଗଲା । ସେ ଜାଣିଲା ହୋଇଁ ବିଦେଶରେ କେତେ ବାଧାବିଘ୍ନ ନିକଟରେ ତାଙ୍କୁ ମୁଣ୍ଡ ନୁଆଁଇବାକୁ ପଡ଼ି ନାହିଁ ! କିନ୍ତୁ ହା ! ଆଜିଠାରୁ ସବୁ ଦୁଃଖ ଦୁର୍ଦ୍ଦଶାର ଅବସାନ ହେଲା ।

ସେ ମନେ କରିଥିଲେ, ବନ୍ଧୁହୀନ ବିଦେଶର ନିର୍ମମ କବଳରେ ପଡ଼ି ତାଙ୍କର ସମସ୍ତ ସରସ କୋମଳ ପ୍ରବୃତ୍ତିଗୁଡ଼ିକ ନିଷ୍ପେଷିତ ହୋଇ ଯାଇଅଛି, ଅଛି କେବଳ ଗୋଟିଏ ନିରାଶାର କରୁଣ ହାହାକାର । କିନ୍ତୁ ସେ ଆଜି ନୂତନ ଭାବରେ ଦେଖିଲେ, ହୃଦୟର ପ୍ରତ୍ୟେକ ତନ୍ତ୍ରୀ ସୁଦୂର ଏ ମଧୁର ନିମନ୍ତ୍ରଣର ସମସ୍ୱରରେ ବାଜି ଉଠିଲା ।

ଗୋପାଳ ବାବୁଙ୍କର ବିବାହ ପ୍ରାୟ ତିନି ବର୍ଷ ହେଲା ହୋଇ ସାରିଛି, କିନ୍ତୁ ଦାମ୍ପତ୍ୟସୁଖ ଉପଭୋଗ କରିବା ତାଙ୍କ ଭାଗ୍ୟରେ

ଅମ୍ଳରୋଗରେ ମୃତ୍ୟୁ ହୋଇଥିଲା । ବର୍ତ୍ତମାନ ଏ ଦାରୁଣ ସମ୍ବାଦ ଶୁଣି ଗୋପାଳ ବାବୁ ହତବୁଦ୍ଧି ହୋଇ ଗଲେ । ଇନ୍ଦୁକୁ ସେ କୋଳରେ ଜାକିକରି ଧରି ମନ୍ତୁଷ୍ଟ ଜଣାଥିଲେ ଓ ଅଶ୍ରୁଧାର ଓଷ୍ଠ ତାକୁ ସ୍ନାତ କରୁଥିଲେ । ତାଙ୍କ ବାଲ୍ୟଜୀବନର ଜୀବନ ପଥର ସ୍ମୃତି ପଙ୍କରେ ଇନ୍ଦୁ ଓ ଚାରୁପ୍ରଭାର ସ୍ମରଣେ ଜାଗିଲା । ସେ ଆଜି ଇହଧାମରେ ନାହିଁ, ଏକଥା ଭାବନ ହେଲାରୁ ତାଙ୍କ ହୃଦୟର ତନ୍ତ୍ରୀ ଛିନ୍ନ ହେବାକୁ ଲାଗିଲା । ଆହା ! ସେ ଅନାଥ ବାଳକଟିର ଦଶା କଣ ହେବ ? ତାଙ୍କ ଘରେ ଆଜି ସେ କେତେକ ଥିଲେ ସୁଖୀ ବାପ ମା ଗଲା ପରେ ଆଜି ଆପଣାର ବୋଲି କିଏ ? ଶୋକର ବେଗ କିଛିଏ କମି ଗଲାରୁ ଗୋପାଳ ବାବୁ ସେଠାରୁ ଯାଇ ମହନ୍ତଙ୍କୁ କୁହାକୋହା କରି ଲକ୍ଷଣା ନବକୁ ସଙ୍ଗରେ ଧରି ନିଜ ଘରକୁ ଘେନି ଆସିଲେ ।

ସତ୍ୟ ଶିକ୍ଷା ସେଠାରେ ମୃତ ଗୁରୁଦେବଙ୍କର କିଛି ବଡ଼ାଟିଏ ଚନ୍ଦନ ରଖି ତାକୁ ପୁଷ୍ପଚନ୍ଦନ ଦେଇ ମହନ୍ତଙ୍କର ପୂଜା କରି ଗୋପାଳ ବାବୁ ସେଦିନଠାରୁ ଇନ୍ଦୁର ଶେଷ ଚିହ୍ନ 'ନବ'ଟି ପାଇଁ ହୃଦୟର କୋଣଟିଏ ପବିତ୍ର କକ୍ଷ ଅଲଗା କରିଦେଲେ । ସ୍ୱଭାବରେ, ଆହା ! ମନୁଷ୍ୟ ଜୀବନରେ କେତେ ଦୁଃଖ ନ ଭୋଗିଲା ! ବୋଧହୁଏ ଆମମାନଙ୍କର କିଛି ଦୋଷ ଥିଲା; ହୁଏତ ସେ ବିବାହଟି ତାହା ପକ୍ଷରେ ସୁଖକର ହୋଇ ପାରିଲା ନାହିଁ, ଆଉ କିଛିଏ ଭଲ ଘର ଦେଇଥିଲେ ଅବା ସେ ସୁଖରେ ବଞ୍ଚି ପାରିଥାନ୍ତା । ନିଜ ଜୀବନରେ ଏହିପରି ଜୀବନର କଳ୍ପିତ ଅପରାଧର ଆରୋପ କରି ଗୋପାଳ ବାବୁ

ଏ ଭାବ କାନ୍ତି ଆମ ଚିନ୍ତାଜଗତକୁ କେଉଁ ଜଡ଼ତାଠାରୁ ନାଶ ନାସ୍ତି ଖୁସିବାସିରେ ଭରିଦେଲା, ସେଥିକୁ ଏଠାକୁ ଆଣିବା ଦ୍ୱାରା ଅହଙ୍କାର ଲକ୍ଷ୍ଣ କାରଣ ନାହିଁ କି ? ଏ ପ୍ରଶ୍ନ ମୋ ଶାସ୍ତ୍ରର କଥା ନ ହୁଏ ?

ଗୋପାଳ ବାବୁ ସାଧାରଣତଃ ଟିକିଏ ଗମ୍ଭୀର ପ୍ରକୃତିର ଲୋକ । ତାହାଙ୍କ ମନରେ ବେଶି ଭାବାବେଗ କଥା ବାର୍ତ୍ତା କରିବାକୁ ଭଲ ପାଆନ୍ତି ନାହିଁ । କିନ୍ତୁ ନବ ଆସି ତାଙ୍କର ଏ ମୌନବ୍ରତ ଭଙ୍ଗ ଦେଇଛନ୍ତି, ସେ ବର୍ତ୍ତମାନ ବାଚାଳକ ଭଳି ହେଲେ । ଯେଉଁମାନେ ତାଙ୍କୁ ଭଲ କରି ଜାଣନ୍ତି, ସେମାନେ ତାଙ୍କର ଏ ଅଦ୍ଭୁତ ପରିବର୍ତ୍ତନରେ ଆଶ୍ଚର୍ଯ୍ୟାନ୍ୱିତ ହୋଇଗଲେ । ସେ ନବକୁ ନେଇ କେତେ ହସଖେଳ କରନ୍ତି, କେତେ ଖେଳାରେ ମାତି ଯାଆନ୍ତି, କିନ୍ତୁ ତଥାପି ସେଥିରେ କ୍ଳାନ୍ତି ବା ଶ୍ରାନ୍ତି ନାହିଁ । ପୁନର୍ବାର ବାଲ୍ୟଜୀବନ ଫେରି ପାଇଲା ପରି ସେ ଏକ ପ୍ରକାର ଆହ୍ଲାଦରେ ଆତ୍ମହରା ହୁଅନ୍ତି । ଯେଉଁ ଦିନ ନବ ଗୁରୁଣ୍ଡିବା ଅଭ୍ୟାସ ପ୍ରମାଣ କରି ନାନୁ ବାପା ଧରି ଘରର ପ୍ରଥମରୁ ୬।୭ ହାତ ଦୂର ଦ୍ୱାରବନ୍ଧକୁ ଡେଇଁ ପଡ଼ିଲା, ସେ ଦିନ ଗୋପାଳ ବାବୁ ତାକୁ କୋଳକୁ ନେଇ ଚାରିଆଡ଼ିକି ଘୁରାଇ ତା ମୁହଁରେ ଅଗଣ୍ୟ ଚୁମ୍ବନ ଦେଇ ତାକୁ ଅସ୍ଥିର କରି ପକାଇଲେ । ପକ୍ଷ୍ୟାନ୍ତରରେ ଗୋଟି ଗୋଟି ହୋଇ ଚାରି ଫୁଟିଲା ପରେ ଯେତେବେଳେ ନବର ମୁହଁରୁ ମା ମା, ତା ତା ଅସ୍ଫୁଟ ଅସ୍ପଷ୍ଟ ଶବ୍ଦଗୁଡ଼ିକ ପ୍ରଥମ କରି ଫୁଟି ଉଠିଲା, ଗୋପାଳ ବାବୁଙ୍କର ଆନନ୍ଦ ଉତ୍ସବର ସୀମା ରହିଲା ନାହିଁ । ନବ ଯେ ଦିନେ ଜଣେ ଛୁଟ୍ ବକ୍ତାଲୋକ ହେବ, ଏ ବିଷୟରେ ସେ ଏକପ୍ରକାର ନିଃସନ୍ଦେହ ହୋଇଗଲେ । ଏତେ କମ୍ ବୟସରେ କେଉଁ ପିଲାଟା

ମାଗିଲ, ମୋ ରକ୍ତମାଂସ ଗଢ଼ା ଜୀବନ୍ତ ରସ? ନା, ଆଗି ରାଗ ମାତ୍ର ବଳିଲ୍ ଗୋଟାଏ ଫେଣ୍ଟିବାର ଅବଶିଷ୍ଟ ଚତୁର ଟୋକା ! ଇମିତକା ମଣିଷ କଣ ସଂସାରରେ ଥାନ୍ତି ? ମୋ ଗଢ଼ା ହେଲା ଫଳ, ଏ ଛନ୍ଦରତ୍ନଟୋକା ହେଲା ଆର ! ଏ କାକଆ ବଦଳାଇଁ ସୁ ପିଲାଟା ଠେଇଁ ଏମିତି କ ମନ୍ତ୍ର ଲଗେଇଲା ଯେ ତାର ଠେଇଁ ସବୁ ଗଲା, ସବୁ ପିଲାଙ୍କ ଅଜଡ଼ା ହେଇଛି ! ଏତେ ଯିବାଙ୍କ ଦୁଃଖ ଅଶ୍ରୁର ଶୁଅନ୍ତୁ ଶୋଷ ପାଏ ନାହିଁ ।

ଗୋପାଳ ବାବୁ ଦେଖିଲେ, ନବର ସେଦିନର କଳ୍ପନାର ଖମତା ଉପରେ ତାଙ୍କର ସେତେବେଳେ ଯେଉଁ ଉତ୍ତାପ ଥିଲା, ସେଟା ଅତ୍ୟନ୍ତ ଅଭ୍ରାନ୍ତ ନୁହେଁ । ଅନ୍ତତଃ ନବର ସ୍ତ୍ରୀ ଉପରେ ଯେ ସମତାଟା ରହୁ ଧାର୍ଯ୍ୟ କଲା ନାହିଁ । ସେ ସ୍ପଷ୍ଟ ବୁଝି ପାରିଲେ ଯେ, ସ୍ନେହ କରିବା ନ ଜାଣିବାର ପାପ, ସୁଖ ପାଇବା ତ ଦୂରର କଥା, ନବ ସ୍ୱରେ କମଳାର ଅଫିଲ ବାଧା ହୋଇ ଉଠୁଛି । କେବେ ତ ଏ ସ୍ଥାନଟା ନବଦଣ୍ଡରେ ବଡ଼ ଅପରାଧ ନୁହେଁ ! ଏକଥା ଗୋପାଳ ବେଳକୁ ତାଙ୍କ ଦେହ ଶିହରି ଉଠିଲା । କଣ କରିବେ, ସେ କିଛି ବୁଝି ପାରିଲେ ନାହିଁ । ପାଖରେ ନବ ବସି କାନ୍ଦୁଥିଲା । ପତ୍ନୀ ସେତେବେଳେ ଶାବକଟିର ଲାଗୁର କୌଣସି କାରଣ ଦେଖିଲେ ତାକୁ ପାଖକୁ ନେଇ ନିଜ ବକ୍ଷସ୍ଥଳରେ ଝୁଲାଇ ଦେଲା ଏ, ଗୋପାଳବାବୁ ସେଥିପାଇଁ ଧରିକୁ କୋଳକୁ ଆଣିନେଇ ଦ୍ରୁତ ଗତିରେ ବାହାରେ ଘୁଞ୍ଚି ଆସିଲେ ।

ନବ ଶିବଏ ଭାବ ଉଠିଲେ କମଳାର ସେଇଟା ବଡ଼ ଅସହ୍ୟ ହୋଇ ପଡ଼େ । "ଏ ଘରେ ଆଉ ରହି ହେବ ନାହିଁ ।

ସଦାବେଳେ ଛୁଆଟାଏ ଯେବେ ଜିଦ୍ଦି ହେଲେ କାହା ମନ ଥଣ୍ଡା ରହିବ ? ପରିବାରରେ କଅଣ ଶିକ୍ଷା ନାହାନ୍ତି ! ଏମିତ କୋଣ୍ଡ ଚିଲଟା ଦରଦମ ସ୍ୱର ମେଳେଇ କହିଛୁ ? ଏମାନେଙ୍କ ରିଲଟିଏ ଚଳୁଛି ଯେ ଟିକଏ ଲୁଣ୍ଡା ମୁଣ୍ଡ ବାଜିବାକୁ ନାହିଁ । ବେଶି ଆଦର ପାଇଲେ ସମସ୍ତେ ମିଳେଇ ହୁଅନ୍ତି ।" ଏହିପରି କେତେ କଥା କହି କମଳା ଚକ୍କାର କଣ ଭାରେ । ଗୋପାଳ ବାବୁ ମୂକାଟି ପରି ପଡେ କଚ୍ଛୁ କଥା ନ କହି ନଜକୁ ସେଠାରୁ ନେଇଯାଇ କଅଁଳା ପଅଁଳା କଣ ଖୁଣ କରି ବାଅନ୍ତି । ନରର ବସ୍ଥପ ଦୃଷ୍ଟି ସଙ୍ଗେ ସଙ୍ଗେ ଧରର ଜନଧ ପଥ ଛାଡ଼ିବା ପ୍ରବୃତ୍ତି ପ୍ରବଳ ହୋଇ ଉଠିଲା । ଆଜି ସ୍କିମ୍‌ଟାଏ, କାଲି ବଡ଼ଟାଏ. ପରଦିନ ଲଣ୍ଟନଟାଏ ଏହିପରି ନବକିଶୋରଙ୍କ ଅନୁଷ୍ଠାନସ୍ଥ ଦିନରେ ମହିଳେର ବରଷ ନେନଥକ ଖଣ୍ଡ ଜଳଆ ଗଡ଼ାକୁ ସ୍ଥାନାନ୍ତରିତ ହେଲା । କମଳାର ଦୃଷ୍ଟିକୋଣରେ ବେଶି ଦୂନାମ ନ ଥିଲେ ମଧ୍ୟ ଏହି ସମୟରେ ତାଙ୍କର ମିତବ୍ୟୟୀ ଭାବଟା ବେଶ ଜାଗ୍ରତ ହୋଇ ଉଠିଲା ଏବଂ ସେହି ଅବସରରେ ପଦେ ଅଧେ କଡ଼ା କଥା ମଧ୍ୟ ମୁହଁରୁ ବାହାରି ଗଲା । ଏହା ହେବା ମଧ୍ୟ ସ୍ୱାଭାବିକ; ବିଶେଷତଃ ସେତେବେଳେ ମାଙ୍କ ଅଙ୍ଗୀକାରା ନିଜର ବା ନିଜର ଟଙ୍କା ନୁହେଁ । ଗୋପାଳବାବୁ ବର୍ତ୍ତମ କାଳୁ ଏଥିରେ ବଡ଼ ଅପ୍ରସ୍ତୁତ ହୋଇ ପଡ଼ନ୍ତି । ସେ ମନେ କରନ୍ତି, ଏ ସମସ୍ତ ବାକ୍ୟ-ବାଣର ଲକ୍ଷ୍ୟସ୍ଥଳ ସେ ନିଜେ, ଏବଂ ସ୍ତ୍ରୀକୁ ସନ୍ତୋଷ କରିବାପାଇଁ ସେ ନବକୁ ବେଳେ ବେଳେ ପଦେ ଅଧେ ଗାଳି ଦେବାକୁ ମଧ୍ୟ କୁଣ୍ଠିତ ହୁଅନ୍ତି ନାହିଁ ।

ନବ ବର୍ତ୍ତମାନ ଗୋପାଳ ବାବୁଙ୍କର ପ୍ରଧାନ ଚିନ୍ତାର ବିଷୟ ହୋଇ ଉଠିଲା । ଏଣିକି ନବ ଟିକିଏ ଚଳବୁଲ କରି ପାରୁଛି । ଅତଏବ ପଦେ ପଦେ ତାର ବିପଦ । ତାହାର ତ ଆଖି ବୋଲି କହିବାକୁ ଏ ଭବସଂସାରରେ କେହି ନାହିଁ, ଯିଏ ତାହାକୁ ଯତ୍ନ କରିବ, ଉପରେ ସେ ମନୁଷ୍ୟ ହେବ, ଏହିସବୁ ଚିନ୍ତା ଗୋପାଳ ବାବୁଙ୍କୁ ବିଚଳିତ କଲା । ସେ ଏଣିକି ଆଉ ପ୍ରକାଶ୍ୟ ଭାବରେ ନବକୁ ଆଦର ସ୍ନେହ କରିବାକୁ ସାହସ କଲେ ନାହିଁ । କମଳା ପାଖରେ ଝୁଲାବେଳେ ନବର ହାସ୍ୟ କୌତୁକ ଦେଖି ଗୋପାଳ-ବାବୁ କେତେ ଥର ମନେ ମନେ ଚାହାନ୍ତି, କୋଳକୁ ଆଣି ତାକୁ ଗୋଟିଏ ବୋକ ଦେବେ ବା ପେଟ ଚିପି କରି କଥା କହିବେ, କିନ୍ତୁ କିପରି ଗୋଟାଏ ଅଜଣା ଭୟ ତାଙ୍କୁ ତର୍ଜନୀ ଦେଖାଇ ବାରଣ କରୁଥାଏ । ସେ କେବଳ ଗୋଟିଏ ଦୀର୍ଘ ନିଃଶ୍ୱାସ ପକାଇ ଛାଡ଼ି ଦିଅନ୍ତି । କିନ୍ତୁ ନବକୁ ନିର୍ଜନରେ ପାଇଲେ ସେ ଦୁଇଆଖିକୁ ଆଖି ବୁଜାଇ ଦେଇ ଗାଢ଼ ଆଲିଙ୍ଗନରେ ଆବଦ୍ଧ କରି ପକାନ୍ତି । ଏହିପରି ସେ ମନର ଭାବକୁ ଯେତିକି ଗୋପନ କରିବାକୁ ଚେଷ୍ଟା କରନ୍ତି, ତାହା ସେତିକି ଫୁଟି ଉଠେ । କେତେବେଳେ ଭାବନ୍ତି, ସେ ମୋର କଣ କରିବ ଯେ, ମୁଁ ସବୁ ସାବାଳକ ମୃତାତ୍ମାଙ୍କ ଉଦ୍ଦେଶ୍ୟରେ ଜଳାଞ୍ଜଳି ଦେଇ ପାରିବ କିଣା ଗୋଲାମ ପରି ରହିବ ? ଏ ଜଣ ମୂର୍ଖ ନା ଦୁଃଖ ? କିନ୍ତୁ ସେ ଭାବନା କ୍ଷଣିକ ପାଇଁ ।

ଗୋପାଳ ବାବୁ କିନ୍ତୁ ଯେତେ ସାବଧାନ ହେଲେ ବୃଦ୍ଧା କମଳା ଆଖିରେ ଧୂଳି ପକାଇ ପାରିଲେ ନାହିଁ । ତାଙ୍କର ଏପରି

ସୃଷ୍ଟିକର୍ତ୍ତା ସମସ୍ତ ଦୁଃଖ ଶୋକ ସୃଷ୍ଟି କରି ତାହା ସହିତ ଆଶାର ଯେଉଁ ଅଦ୍ଭୁତ ବର୍ତ୍ତିକା ଦେଇ ଅଛନ୍ତି, ସେଥିରେ ଆଉ କଥା ବା ପଡ଼ୁଛି କଣ ? ହାତକଟିଆ ଅନ୍ଧାରୁଆ କୋଠରି ଭିତରର ଭିତ ମଧ୍ୟ ଅନ୍ତର୍କଣରେ ହୃଦୟରୁ ହଜାଇଯାଏ; ନିଚ୍ଛକ ଦିନ ରାତ୍ରିରେ ଚାତକ ମଧ୍ୟ ଅପେକ୍ଷା ଲଜ୍ଜାମଣ୍ଡିତ ଭାବ ନେଇ ନିର୍ଦ୍ଧେ ଥାଏ ସେ, ସମସ୍ତ ସମୟରେ ନିଜର ନାନା ଭାବନାର ମଧ୍ୟ ଆବର୍ତ୍ତିତ ହୋଇପଡ଼େ ! ଆଉ କାହାର କଣ ହେଉ ନ ହେଉ ଅନ୍ତତଃ ଗୋପାଳ ବାବୁଙ୍କ ଭିତରେ ସେ ଲଜ୍ଜାମଣ୍ଡିତଙ୍କୁ ନେଗାଟିଭେଟ ଭାବ ଜାତ ହେଉଛି । କୁଆଡ଼େ ଗଲା ତାଙ୍କର ସେ ପ୍ରଫୁଲ୍ଲ ମୁଖକାନ୍ତି ? ସେ ସମୁଜ୍ଜ୍ୱଳ ହାସ୍ୟ ? ଅଛି କେବଳ ପାଣ୍ଡୁର ମୁଖମଣ୍ଡଳରେ ବିଷାଦର କାଳିମା । ଚାଲିଚଳଣି ମଧ୍ୟ ସେ ନେଇ ଟିକିଏ ଶିଥିଳ ହୋଇ ପଡ଼ିଲେଣି । ସର୍ବଦା ଗୋଟାଏ ଅନ୍ୟମନସ୍କ ଭାବ ଯେପରି ବରାବର ଗୋଟାଏ ବଣ ଖୋଜୁଛନ୍ତି ।

ସେ'ଥିମାସିଆ ଦିନ, ସକାଳୁଆ କଟକର ବ୍ୟସ୍ତତାରୁ, ଗୋପାଳ ବାବୁଙ୍କର ଜଣେ ଉପରସ୍ଥ କର୍ମଚାରୀ ତାଙ୍କୁ ଟିକିଏ ଜଣ ସାମାନ୍ୟ ତ୍ରୁଟି ଲାଗି ଅନେକ ଅପମାନସୂଚକ କଥା କହି ଗାଳି ଦେଲେ । ସେ ତ୍ରୁଟି ମଧ୍ୟ ତାଙ୍କ ନିଜର ନୁହେଁ । ଗୋପାଳ ବାବୁଙ୍କ ପକ୍ଷ ସୂଚକ ବିଶ୍ୱସ୍ତ କର୍ମଚାରୀ ସେ ଅଫିସରେ ଆଉ ନାହାନ୍ତି କହିଲେ ଚଳେ । ଏଥିଲାଗି ଉପରସ୍ଥ କର୍ମଚାରୀମାନଙ୍କଠାରୁ ଆରମ୍ଭ କରି ପିଅନ ପର୍ଯ୍ୟନ୍ତ ସମସ୍ତେ ତାଙ୍କୁ ଟିକିଏ ଭୟ ଓ ଖାତିର କରନ୍ତି । ତାଙ୍କର ପ୍ରକୃତ ଶାନ୍ତ ଶିଷ୍ଟ ହେଲେ ବୁଝା ସେ ଜଣେ ସ୍ୱାଧୀନଚେତା

ଆରେ ଟିକଏ ଦେ, ସେ ଧରିଥାଉ, ସେ ଧୂର୍ତ୍ତ ଲୁଚିଗଲାରୁ ତୋ ବାଜା ତୋତେ ଫେରାଇ ଦେବ ସେ। ନବ କ ବୁଝିବା ଜନ୍ତୁ! ଓଲଟି ଦଉଡ଼ୁ ତା ଆଗରେ ଦେଖି ବଜେଇ ବଜେଇ ନାଚନ୍ତି। ଏଣେ ଦେଖ ରାଧୁର ନାଚ, ସୁଧାଧର ଝୋଲମଣ୍ଡ ପଣା ତୋଇଛନ୍ତି। କିଛିକ୍ଷଣ ପରେ ନବ ବାଜାଟିକୁ ଉଠାଇନେଇ ଲୁଅଲଣ୍ଡ କରନ୍ତୁ ମୁଁ ତୁନକାଣ ରାଧୁକୁ ଟିକଏ ଧମକେଇ ନଥାଇ ବୋଧ କଣ ଦେଲେ। ନବ ନେଣ୍ଟି ଆସି ରାଧୁ ହାତରେ ବାଜାଟିକୁ ଲେଉଟି ଦାଏ ଯିବ ମୁଣ୍ଡେରିଜ୍ ହୋଇ ଉଠିଲା। ତାକୁ ମାରେ କି ନ ମାରେ! ରାଧୁକୁ ବୁଝେଇ ମୁଁ ନବ ହାତକୁ ବାଜାଟା ବଢ଼େଇ ଦେଲି ବେଳକୁ 'କଅଁ ସେ ମୋ ବାଜା ଧରିଲା ନା' କହି ଚିଲିଲା ସେ ସେଇଠାରୁ ମୋ ଉପରକୁ—ଦେଖ ମୋ ମୁଣ୍ଡ କଣ ହୋଇଛି! ଆଖି ଫୁଟି-ଯିବାକୁ ଆଉ କେତେ ବାକି ଥିଲା! ମୋତେ ଓ ରାଧୁକୁ ଆଜ ଆମ ଘରକୁ ପଠାଇ ଦଅ, ତେବେ ପଣ୍ଡିତଙ୍କ ନାମ ନବକୁ ଦେଖନ୍ତ ରାଗ କରୁଥାଅ। ମୁଁ ଆଜ ଏ ଘରେ ଦଣ୍ଡେ ହାଣି ବୁଝିବ ନାହିଁ—ଇତ୍ୟାଦି। .

ନବ ନିକଟରେ ଥିବା, କମଳା ମୁଣ୍ଡ ଦେଖାଇଲା ବେଳକୁ ସେ ଆଉ ସମ୍ଭାଳି ନ ପାରି କହିଲା "ଖୁଣ୍ଟରେ ବାଜ ମାଉଁଙ୍କ ମୁଣ୍ଡ ଫାଟି ଯାଉଛି, ମୁଁ କାହିଁକି—"। କମଳା ସମସ୍ତଙ୍କର ତା' ଉଚ୍ଚ ସ୍ୱରେ ମିଥ୍ୟାରେ ଅଭିଯୋଗ ଦେଖି ଗୋପାଳ ବାବୁ ନବ ଆଡ଼କୁ ଆଖି ତରାଟି 'ଚୁପ୍' ବୋଲି କଥା ବନ୍ଦ କରି ଦେଲେ। ଗୋପାଳ ବାବୁ ମାନବ ଚରିତ୍ରର ବିଶେଷଜ୍ଞ ନ ହେଲେ ଧୂର୍ତ୍ତା ପଣିଆରର ତେତେକ

ଥୂପ୍ସ୍ତୂପ୍ନା ।

ଜଣ ଲେଖକଙ୍କର ପ୍ରସଙ୍ଗ ଚରିତ୍ର ବୁଝିବାର କ୍ଷମତାଟିକ ତାଙ୍କର ଥିଲା । ତେଣୁ କମଳାର କଥାଗୁଡ଼ିକ ନିର୍ମଳ ସତ୍ୟ ବୋଲି ବିଶ୍ୱାସ କରି ପାରିଲେ ନାହିଁ । ଆଉ କିଛି ପ୍ରମାଣ ତାଙ୍କର ହସ୍ତଗତ ନ ହେଲେ ବୁଝା ଗୋଟାଏ ଟିଣର ଖେଳନା ବାଜି ମୂଲ୍ୟଟା କପର ଏତେ ଫୁଲିଯିବ, ଏ କଥା ସେ ନାନା ଚିନ୍ତା ସତ୍ତ୍ୱେ ହୃଦୟଙ୍ଗମ କରି ପାରିଲେ ନାହିଁ । ଖେଳନା ଦ୍ୱାରା ଟିକିଏ ଛିଣ୍ଡିଯିବା କି ଚିର-ଫୋଲିଯିବା ଅବା ହୋଇପାରେ । ବାସ୍ତବିକ ମଧ୍ୟ ସେଇୟା, ଜବ ଗୋଟିଏ ଖେଳନା ଆଣି ବଜାଇବା ଛଡ଼ା ଅନ୍ୟଉପାୟରେ ସତ୍ୟର ଛିଣ୍ଡି ନାହିଁ ବୋଇଲେ ଚଳେ । ପାହା ହେଉ ଗୋପାଳ-ବାବୁ ସବୁ କଥା ବୁଝି ପାରିଲେ କିନ୍ତୁ ନାନା କାରଣରୁ ସେ ଜବର ବିମ୍ବରଟା ଉଚ୍ଚାରଣ ଆରମ୍ଭ କରିଦେଲେ । ସେ ରାଗରେ ଜବର କାନକୁ ଧରି ଦୁଇଟା ଚାପୁଡ଼ା ମାରି କହିଲେ, "ହାରାମଜାଦା ଟୋକା ! ସ୍କୁଲ ଆଖି ମୁଁ ନାକରେ କାନ ଧରିଲଣି । ତୁ ଏ ସବୁ ନ ଗଲେ ମଙ୍ଗଳ ନାହିଁ, ତୁ ହେଉଛୁ ସବୁ ଅନର୍ଥର ମୂଳ !" ଏହା କହି ଆଉ କାହାରି ଆଡ଼କୁ ନ ଅନାଇ ଯନ୍ତ୍ରଣା ଦେବାଲାଗି ସେ ଗୁଜରକୁ ଡାକିଲେ । ଏପରି ଅପମାନରେ ଶୁଭାଙ୍କର ଚଳନ ଦେଖି ଗୁଜରଟି ମଧ୍ୟ ବଡ଼ ଶଙ୍କିତ ଭାବରେ ନିଜ କାର୍ଯ୍ୟରେ ଲାଗିଗଲା ।

ଜବ ମାଡ଼ ଖାଇବା କଥା ଛାଡ଼, ମାମୁଙ୍କଠାରୁ ସ୍ନେହ ଆଦର ଛଡ଼ା ଜବନ କଟୁକଥା ଶୁଣି ନାହିଁ । ଆଜି ଏ ଘୋର ଅପମାନରେ ତା ମନରେ ଗୋଟିଏ ଦୁର୍ଜୟ ଅଭିମାନର ଉଦ୍ରେକ ହେଲା । ସେ

ପୂର୍ବରୁ ଥରେ ବାପାଙ୍କ ଝରକାରକୁ ଯାଇ ଭଙ୍ଗାଇଦେବାରୁ ତାଙ୍କ ଗାଲରେ ରକ୍ତ ଆସିଥିଲା । ଆଜି ଏହି ଅନ୍ୟାୟ ଶବ୍ଦରେ ତା ମନଟା ଘରଆଡ଼କୁ ଅତ୍ୟନ୍ତ ଆକୃଷ୍ଟ ହୋଇ ପଡ଼ିଲା । ତାହାଛଡ଼ା ସେ ଶୁଣିଥିଲା ଯେ, ତାହାର ସହପାଠୀ ହରି ତା ବାପାଙ୍କଠାରୁ ମାଡ଼ ଗାଳି ଖାଇ ଘରଟାକୁ ଛାଡ଼ି ଯାଇଥିବାରୁ ତାର ସେହି ଦିନଠାରୁ ଟିକିଏ ସ୍ୱାଧୀନତା ବଢ଼ିଯାଇଛି । ମାହାଦେବ ଯେ କାହାରିକୁ କିଛି ନ କହି ପାହାଡ଼ କଣ ଗୋବର୍ଦ୍ଧନ ଅଭିମୁଖରେ ବାହାରି ପଡ଼ିଲା ।

ସେ ଦିନ ସକାଳୁ ଖଣ୍ଡ ମେଘେ ସମସ୍ତ ଗ୍ରୀଷ୍ମର ପରି ଲୁଚି ଲୁଚି ଆକାଶରେ ଭାସି ବୁଲୁଥିଲେ । କେବଳ ଦ'ଘଡ଼ି ଭିତରେ ଅଛି, ସେମାନେ କି ଭଳି ହୋଇଗଲେ କେଜାଣି, ସେହିପରି ଅସଂଖ୍ୟ ଦଳବଳ ନେଇ ବିଜୁଳିପତାକା ଉଡ଼ାଇ ଘଡ଼ଘଡ଼ଶବ୍ଦ ବଜାଇ ଆସି ରଣସ୍ଥଳରେ ଉପସ୍ଥିତ ହୋଇଗଲେ । ଏପରି ପାଣି ପଥର-ମାଡ଼ ଆଉ ଦେଖା ନାହିଁ । ରାତିରେ ଟିକିଏ ବର୍ଷା ଛାଡ଼ିବାରୁ ଗୋପାଳ ବାବୁ ବୁଲିଯିବା ବାହାନାରେ ଯାଇ ଅନେକ ସ୍ଥାନରେ ନବର ଖୋଜ-ଖବର କରି ହତାଶ ମନରେ ଫେରି ଆସିଲେ । ସ୍କୁଲଘରର ମଧ୍ୟ ପାଖ ଆଖ ଖୋଜ ଖୋଜି କିଛି ଫଳ ହେଲା ନାହିଁ । ଶେଷରେ ଗୋପାଳ ବାବୁ ବିରକ୍ତ ହୋଇ କହିଲେ, "ଯାଉ ସେ କୁଆଡ଼େ ଯାଉଛି । ତାକୁ ଆଉ କେହି ଖୋଜାଖୋଜି କରନା ।"

ସେ ଦିନ ରାତିରେ ଚେଷ୍ଟା କରି ତାଙ୍କ ଆଖିରେ ନିଦ ମାଡ଼ିଲା ନାହିଁ । ଟିକିଏ ଯାଇ ବିଛଣାରେ ପଡ଼ନ୍ତି, ପୁଣି ଆସି

ବରଣ୍ଡାରେ ବୁଲନ୍ତି । ଡାହାଣ୍ଡା ବେଳକୁ ଟିକିଏ ତନ୍ଦ୍ରା ଆସିଲା ପରେ, କିନ୍ତୁ ଗୋଟାଏ ଭୟାନକ ସ୍ୱପ୍ନ ଦେଖି ନିଦ ଛାଡ଼ି ବସିଲେ ।

ଟିକାଏ କଅଁଳ ଖରା ହୋଇଗଲାଣି । ଗୋପାଳ ବାବୁ ଦାଣ୍ଡରେ ଛୁଆ ଦିହାର ଏଜେଡ଼ୁଷ୍ଟିରେ କଣ ଭାବୁଛନ୍ତି । ଗାଁର ପିଲାଏ ପାଖଘର ଭାଇ ଅନେକ ଗପରେ ମଜ୍ଜି ଆସି ବସିଥିଲେ । ବର୍ଷା ତଥା ପଞ୍ଚୁ ପଞ୍ଚୁ ପିଲାମାନେ କହିଲେ, "ବାବୁ, ସେ ଭଉଣୀକୁ ଯେଉଁ ବର୍ଷା ହେଲା, ଏପାଖକୁ କାହିଁ ? ବଡ଼ ବଡ଼ କେତେ ଗଛ ସେ ଭାଙ୍ଗି ପଡ଼ିଲା, ତାର ସୀମା ନାହିଁ । ସାତ ଆଠ ବର୍ଷର ବାଳିଆ ହୋଇ କରି ପିଲାଟିଏ ଏଣ୍ଡୁ ପାଉଥିଲା । ସେ ଭୁବନେଶ ଘରର ପିଲା ହଟ, ଗୋଟିଏ ନେଳିଆ ଝଙ୍କା ପିନ୍ଧିଛି । ମାଉସୀ ସେ ଗୋଟାଏ ଡହଳ, ତାକୁ ନେଇ ଦକ୍ଷିଣ ହାତ ଦୂରରେ ପୋତାପଡ଼ ହେଲା । ସେଇଠୋଉଁ ମାନଙ୍କ ସାଙ୍ଗେ ତାର ପ୍ରାଣ ବାହାରିଗଲା ।"

ଗୋପାଳ ବାବୁ ବାହାରକୁ କାହିଁ ନ କହି ଭୁଇଁକୁ ଧରି ସେଇଠାରେ ଥକା ହୋଇ ବସି ପଡ଼ିଲେ ।

---

# ମାଳତୀ

ରାତ୍ର ଅଧକୁ ବଳି ପଡ଼ିଲାଣି । ଆକାଶ ନିବିଡ଼ ମେଘାଚ୍ଛନ୍ନ । କିଛି ସମୟ ଆଗରୁ ଅପେକ୍ଷା ଝିପ୍ ଝାପ୍ସା ବର୍ଷା ହୋଇ ଯାଇଛି । କିନ୍ତୁ ଝଡ଼ ତୋଫାନ୍ ବନ୍ଦ ହୋଇ ନାହିଁ । ନଦୀଆଡ଼େ ଗୁପ୍ ଗୁପ୍ ଶବ୍ଦ ଶୁଣା ଯାଉଛି । ପବନ ବନ୍ଧ ବନ୍ଧ ଗଛଗୁଡ଼ାକ ସଙ୍ଗେ ଏକ ଝଙ୍କଟ ମିଆଁନରେ ମସ୍ତ । ନିଳିକା ବକ୍ଷରେ ମଧ୍ୟ ତାଣ୍ଡବ ନୃତ୍ୟ ଲାଗିଅଛି । ତେଉଗୁଡ଼ାକ ଅଶାନ୍ତ ବାଳକ ଶିଶୁଦଳପରି ଉଚ୍ଛୃଙ୍ଖଳ ଭାବରେ ଯୋଡ଼ାଯୋଡ଼ି ହୋଇ ତଟ ଉପରେ ଆସି କଳ କଳ ଶବ୍ଦ କରି ପଳାଉଛନ୍ତି । କୂଳରେ ବନ୍ଧା ହୋଇଥିବା ନୌକାଗୁଡ଼ିକ ଏ ତାଣ୍ଡବ ଲୀଳାରେ ଯୋଗ ଦେବା ନିମନ୍ତେ ନିଜ ନିଜର ବନ୍ଧନ ରଜ୍ଜୁକୁ ଅସହ୍ୟ ଭାବରେ ଟଣା ଟଣି କରୁଛନ୍ତି ଏବଂ ସଙ୍ଗେ ସଙ୍ଗେ ନିଜର ନିଃସହାୟ ଅବସ୍ଥା ବୁଝି ଖାଲି ଶୁଣାଏ ମନେ ମନେ ଲୁଟିଭି ଲୁଟିଭି ହେଉଛନ୍ତି । ଏ ସମୟରେ ଧୂଆଁ ଉଡ଼ିବା କୁଟୀର ଝଣ୍ଡେ ଖଣ୍ଡେ ମାଳୁଅର ଉଡ଼ା ମଧ୍ୟରୁ କ୍ଷୁଦ୍ର ଆଲୋକ ରେଖାଟିଏ ଜଳରେ ପ୍ରତିବିମ୍ବିତ ହେଉଅଛି ।

ଅଦୂରବର୍ତ୍ତୀ ଧୀବର ପଲ୍ଲୀଟି ନିର୍ଜନ ନିସ୍ତବ୍ଧ । କେବଳ ଗୋଟିଏ କ୍ଷୁଦ୍ର କୁଟୀରରୁ ଗୋଟିଏ କ୍ଷୀଣ ଆଲୋକରେଖା ଆସି ନଦୀବାଣ୍ଡରେ ପଡ଼ୁଅଛି । ସବୁଟି ମାଠ ଓ ଘାସର ଅନ୍ୟାନ୍ୟ

ଚଳଠାରୁ ଟିକିଏ ଅଲଗା । ଘରର କବାଟ ଝରକା କିମ୍ବା ଖୋଲାଥିଲେ ମଧ୍ୟ କବାଟ ପାଖ ଦେଇ ଭିତର ଆଲୁଅ ପଦାକୁ ବାହାରୁଅଛି । ଭିତରେ ମିଞ୍ଜି ମିଞ୍ଜି ହୋଇ ସେଇଁ ପଲିଟି ଜଳୁଛି ତାହା ଅନ୍ଧାର ସେତେ ଦୂର କରୁନାହିଁ, ବରେ ତାହା ଅପେକ୍ଷା ବେଶି ଧୂଆଁର ସୃଷ୍ଟି କରୁଅଛି । ଘର ଭିତରେ ଖଣ୍ଡିଏ କାଠର ଖଟ ଓ ସେଥିରେ ଖଣ୍ଡିଏ ଖିଆ ଉପରେ ଦାଣ୍ଡି, ଚାଳିମ, ବାଉଁଶିଆ, ଢାଲ ପ୍ରଭୃତି ଛଡ଼ା ଅନ୍ୟ କୌଣସି ମୂଲ୍ୟବାନ୍ ଜିନିଷ ଦୃଷ୍ଟିଗୋଚର ହୁଏ ନାହିଁ । ଘରର ପାଖ ସ୍ଥାନରେ ଦୁଇ କେ ଖଣ୍ଡ ଛିଣ୍ଡା ମସିଣା ଉପରେ ଗଣ୍ଠି ବନ୍ଧା ଜଣେ ଲୋକ ଶିଶୁ ଅପର୍ଯ୍ୟସ୍ତ ଅବସ୍ଥାରେ ଶୋଇଅଛି । ତାହା ଉପରେ ଖଣ୍ଡେ କନ୍ଥା ପଡ଼ିଛି ତ ତାହା ଉପରେ ନାହିଁ । ଘରର ଏକ ପାଖରେ ଚାଳ କଂସା ପ୍ରଭୃତି ଦେଇ ଖଣ୍ଡେ ବାସନ କୁସନ ପଡ଼ିଛି । ଆଉ ଏକ ପାଖରେ ଗୋଟିଏ ମଳିନବସନା ସ୍ତ୍ରୀଲୋକ ଚାଳକୁ ଆଉଜି ଆଉ ଗୋଟିଏ ରୁଗ୍ଣ ଶିଶୁକୁ କୋଳରେ ଧରି ଅର୍ଦ୍ଧସୁପ୍ତ ଅବସ୍ଥାରେ ବସି ଢୁଳାଉଛି । ସେତେବେଳେ ଶିଶୁଟି କାନ୍ଦ ଉଠିଲେ ସ୍ତ୍ରୀଲୋକଟି ତାକୁ ସାନ୍ତ୍ୱନା ଦେଉଛି; ପୁଣି କେତେ-ବେଳେ ଚମକି ପଡ଼ିଲା ପରି ଉଠି ଦୁଆର ଆଡ଼କୁ ଉତ୍ସୁକ ଭାବରେ ଅନାଇ ରହୁଛି ଓ କାନ ଡେରୁଛି । କିଛି ସମୟ ପରେ ସ୍ତ୍ରୀ କଣ ଭାବି ଟିକିଏ ଆଗି ଶୁଙ୍କି ଚାଳକୁ ଆଉଜି ପଡ଼ୁଛି । ଏହିପରି ଭାବରେ ସେପରି କାହାର ପ୍ରତୀକ୍ଷାରେ ରହି ସେ ଥରକୁ ଥର ଉଠୁଛି ଓ ଥରକୁ ଥର ଅନ୍ଧାର ଚାହାଁନାରେ ଟିକିଏ ଶୋଇପଡ଼ୁଛି । ଶେଷରେ ସେ ଦୁଆର ପିଣ୍ଡାର ବାହାରକୁ ଯାଇ ଦେଖିଲା ସେ ଅଳ୍ପ ଅନ୍ଧାର ନାହିଁ, ଶରତର ଚନ୍ଦ୍ରାଲୋକରେ ଶୁଭ୍ର ଓ ଉଜ୍ଜ୍ୱଳ ଦେଖାଯାଉଛି

ଆକାଶରେ ଆଜି ଟିକେ ମେଘ ନାହିଁ, ପବନର ବେଗ ମଧ୍ୟ ଟିକିଏ କମି ଆସିଛି ।

ସେ ସ୍ୱଚ୍ଛ ଆକାଶକୁ ଦୃଷ୍ଟି ଦେଉଥିଲା, କେଉଁଠାରେ ଜନ ମାନବର ପସାର ନାହିଁ, କେବଳ କୋଳାହଳର ବୃଥା ଦମ୍ଭ । ତାରକାଗୁଡ଼ିକ ମିଟି ମିଟି ହସି ଦୃଷ୍ଟି ଦେଉଛନ୍ତି । ଆଜି ଖଣ୍ଡେ ଖଣ୍ଡେ ମେଘ ଆକାଶରେ ଭାସି ବୁଲୁଛନ୍ତି । ପ୍ରୀତିଲତାଟିର ନାମ ମାଳତୀ । ବୟସ ବାଇଶି ତେଇଶି ହେବ । ତାର ସ୍ୱାମୀ ଯୁବକ ବେଦେଶ ହୃଦପଦ୍ମରୁ ଝଡ଼ା ଦେଇ ମାତ୍ର ଯିବାକୁ ଯାଇଛି । ଏଣିକିବେଳଯାଏ ଦେଖା ନାହିଁ । ମାଳତୀ ଆଜି ଥରେ ଚଞ୍ଚଳ ଆଖିକୁ ଦୃଷ୍ଟି ଦେଇ ଦୀର୍ଘ ନିଃଶ୍ୱାସଟିଏ ପକାଇ ଦେଇ ଘର ଭିତରକୁ ଅଗ୍ରସର ହେଲା । ପୁଣି କଣ ଘର ଉପରେ ଶିକୁଳି ଲଗାଇ ଦେଇ କିଛି ଦୂରରେ ଥିବା ଗୋଟିଏ କୁଡ଼ିଆ ଆଡ଼କୁ ଗଲା ।

ସେ କୁଡ଼ିଆରେ ଥାଏ ଯାଦୀ । ସେ ବଡ଼ ଦୁଃଖିନୀ । ତାର ସ୍ୱାମୀ ନାହିଁ କି ଅନ୍ୟ କେହି ସାହା ଭରସା ନାହିଁ । ଅଛନ୍ତି ଖାଲି ଦୁଇଟି ଅସହାୟ ଶିଶୁ । ସେହି ଶିଶୁ ଦୁଇଟି ପାଇଁ ସେପରି ସେ ସଂସାରରେ ବନ୍ଧା ରହିଛି । ସେହିମାନେହିଁ ତାର ଶୋକର ସାନ୍ତ୍ୱନା ପୁଣି ସେହିମାନେହିଁ ତାର ଅନ୍ଧକାରମୟ ଜୀବନର ଏକମାତ୍ର ଆଲୋକ ରେଖା । କେତେବେଳେ ମାଛ ଶୁଖୁଆ ବିକି କେତେବେଳେ କାହାର କାମ ଧନ୍ଦା କରି ଦେଇ ଯାହା ପାଏ ସେଥିରେ ତାର ଓ ପିଲାମାନଙ୍କର ଖାଲି ବଞ୍ଚି ରହିବାକୁ ମଧ୍ୟ କଷ୍ଟକର ହୁଏ । ଏତେ ବଡ଼ ଗାଁଟା ଭିତରେ କେବଳ ସବଳ ଦେହର ଯୋଗୁଁ ସେ ଆଜି ପର୍ଯ୍ୟନ୍ତ ପିଲାଟିମାନଙ୍କୁ ବଞ୍ଚାଇ ପାରିଛି ।

ଧ୍ରୁବଙ୍କର ଦେହ ଯେପରି ସୁନ୍ଦର ଓ ବଳିଷ୍ଠ ତାଙ୍କ ମନଟି ସେହିପରି ଉଦାର ଓ ପ୍ରଶସ୍ତ । ତାଙ୍କ ରୋଜଗାର୍ ନିଜ ପରିବାରର ଭରଣପୋଷଣ ପାଇଁ ଯଥେଷ୍ଟ ନ ହେଲେ ମଧ୍ୟ ସେ ଗାଁର ପିଲାମାନଙ୍କୁ ସେଥିରୁ ଏକାବେଳକେ ବଞ୍ଚିତ କରନ୍ତି ନାହିଁ । ଏଣୁ ପିଲାମାନେ ଯେତେବେଳେ "କକା" "କକା" କହି ତା ପାଖକୁ ଦଉଡ଼ି ଆସନ୍ତି ସେ ସେମାନଙ୍କୁ ସ୍ନେହରେ କୋଳକୁ ଟାଣି ନିଏ ଓ ସେମାନଙ୍କ ସହିତ ବାଳକ ପରି ଖେଳ କୌତୁକରେ ମାତିଯାଏ ।

ଏଥିରେ ସବୁ ଠାରୁ ବାଧା ଦେଉଥାନ୍ତି ସେ ମାଳତୀ । କିନ୍ତୁ ମାଳତୀ ପକ୍ଷରେ ତାର ସ୍ୱାମୀର ସବୁ କାର୍ଯ୍ୟ ସୁନ୍ଦର—ତାର ଗୁଣ ସୁନ୍ଦର, ଦୋଷ ସୁନ୍ଦର, ରୂପ ସୁନ୍ଦର, ରଙ୍ଗ ସୁନ୍ଦର । ମାଳତୀର ନିଜର ବୋଲି କିଛି ରହିଲା ନାହିଁ । ତାର ବାପ ହରିହର ବେଦବ୍ରତ ଗ୍ରାମର ଜଣେ ମାତବର ଲୋକ । ଧନ ଦୌଲତ ଗାଁରେ ତାର ନାମଡାକ, ଚାଷ ପାଞ୍ଚଖଣ୍ଡ ବାଡ଼ି ତାର ଭଲ ଲାଗେ । ପଢ଼ିବାବେଳେ ବାରବାଟି ଲାଗି ରହୁଥାଏ । ଭଲ ଘରଟିଏ ଦେଖି ଝିଅକୁ ବାହା ଦେବ ବୋଲି ତାର ଘର ଇଚ୍ଛା ଥିଲା । ଭଲ ଚାଷ ମଧ୍ୟ ମିଳିଥିଲା । କିନ୍ତୁ ଯୁବକଙ୍କର ରୂପ ଗୁଣ ମୋହରେ ମାଳତୀ ସବୁ ଭୁଲି ଦାମ୍ପତ୍ୟକୁ ବରଣ କଲା । ବାପର ବୁଝା ସୁଝା କୌଣସି ଭଳିଆ କୌଣସି କଥାକୁ ଭ୍ରୂକ୍ଷେପ ନ କରି ସେ ଅତି ଧ୍ରୁବଙ୍କର କୁଟୀରରେ ଆଶ୍ରୟ ଗ୍ରହଣ କଲା । ସେହିଦିନୁ ଧ୍ରୁବ ମାଳତୀର ଇଷ୍ଟଦେବତା ।

ଧ୍ରୁବଙ୍କ ଉଜ୍ଜ୍ୱଳପାଏ ମାଛ ଧରିବାକୁ, ଆଉ ମାଳତୀ ଘରେ

ଦଣ୍ଡା ଜଙ୍ଗଲଠାରୁ ଯାଇ କଣ୍ଟା ଡାଳ ନେବାକୁ କି କାଠ ବାଉଁଶ ଦି'ଖଣ୍ଡ ଆଣିଥିଲେ ଗିରା ହେବ । କୋ ଲୋକ କେଉଁଆଡକୁ ପାରିବ ସେ ?

ମାଳତୀ ଶାଗର କୁଡ଼ିଆ ଘର ମଝିକୁ ଯାଇ ଦେଖିଲା, ସବୁଠା ଝଡ଼ିଆବୃନ୍ଦ ତଳ ଦାନ୍ତକଟି କଣ ଛିଣ୍ଡା ହୋଇଛି । ଘରର କଣ୍ଠା କୁଠା ସବୁ ପବନରେ ତଳେ ଖୋଲି ହୋଇ ପଡ଼ିଛି । ଆଉ ଘର ଭିତରେ ଡଗ ଡଗ ହୋଇ ବର୍ଷାପାଣି ପଡ଼ୁଛି । ନୂଆଜୁଓ ଖାଲି ଖାଁ ଖାଁ ଦେଖାଉଛି । ମାଳତୀକୁ ସ୍ଥାନଟା କପରି ମାତ୍ର ପଡ଼ଲା ପରି ଲାଗିଲା । ସେ ଘର ପାଖକୁ ଯାଇ 'ପାଏ' 'ପାଏ' ବୋଲି ଅନେକ ଥର ଡାକିଲା । କିନ୍ତୁ କେହି ସେପାରୁ ଶବ୍ଦ ପାଇଲା ନାହିଁ । କୋଣାର ଘରାଟରେ ହାତ ମାରିଦେବାକୁ କବାଟ ଠିଆ ମେଲି ହୋଇଗଲା । ଆଉ ପାଖେ ସାବଳ ଦୁଇ ଖଣ୍ଡ ବୁଡ଼ାଇ ଶୀତଳ ପବନ ଘର ଭିତରେ ପଶିଗଲା । ପିଲା ଦୁଇଟା ଶାଗଶରେଇ ଉଠିଲେ କିନ୍ତୁ ବାହାର ଟିକଏ କି ହେଁ ନାହିଁ କାହିଁକି ? ଏତେ ବଡ଼ କନ୍ କନିଆ ଅନ୍ଧାରୀ ପବନରେ ତାର ନିଦ ଭାଙ୍ଗୁନାହିଁ କପରି ? ସେ ମାଳତୀ ପାଖକୁ ଯାଇ ତାର ଦେହରେ ହାତ ମାରି ଦେଇ ଚମକି ଉଠିଲା — ଦେହଟା ଯାକ ଥଣ୍ଡା କାକର ! ମାଳତୀ ବୁଝି ପାରିଲା ସେ ପାଖର ପ୍ରାଣ ଅନେକ ଆଗରୁ ପିଞ୍ଜରା ଛାଡ଼ି ଚାଲିଗଲାଣି । କଣ କରିବ ତାକୁ କିଛି ବୁଝି ଦେଖାଗଲା ନାହିଁ—ସେ କେତେବେଳ ପାଖେ ଏକା ହୋଇ ବସି ରହିଲା । କିଛି ସମୟ ପରେ କାନ୍ଦି ନ ଶିଶୁ ଦୁଇଟିକୁ ଧରି ସେ ଜନ ଘରକୁ ଫେରି ଆସିଲା

ସେମାନଙ୍କୁ ମଣ୍ଡିଶାରେ ଶୁଆଇ ଦେଲା ପରେ ମାଳତୀ ମୁଣ୍ଡରେ ଏକ ନୂଆ ଚିନ୍ତା ଆସିଗଲା । ସେ ଭାବିଲା ପାଖ ତ ମଣ

ପରଗଳକୁ ଖୁଲିଗଲା । ସେ ଖାଲି ଘାଣ୍ଟି ହେବାକୁ ଲାଗିଲା । ସେ ଜାଣି ହେଲେ କିଛି ଫଳ ନ ହେବ, କିନ୍ତୁ ସୁବଳ ସେ ତା ମନକୁ ଘାଣ୍ଟି ହୋଇଯିବ । ସେମାନଙ୍କର ପ୍ରାଣ ପାଞ୍ଚଟା ଥିଲା, ସେମାନଙ୍କ ପାଟିରେ ଦ'ବେଳା ଦ'ମୁଠା ଲେଖାଏଁ ଆହାର ଗଡବାକୁ ତାର ବଳ ନାହିଁ । ସୃଷ୍ଟି ଭଗବାନ ଆଣି ଦେଇଛନ୍ତି ବୋଝ ଜଗତରେ ଲଜ୍ଜାରା ବର୍ତ୍ତା । ସମ୍ବାଦ ନ ପାଇ ହେବ ନ ଆସିବ, ପିଲା ଦୁଇଟାଙ୍କୁ ଏବେ କିଏରେ କିଣି ? ସୁବଳ ଦେଖିଲେ ଜଣା ଜଣାଇବ, କିଣ. କହିବ, ତାର ଠିକଣା କଣ ? ଏହିପରି ନାନା ଚିନ୍ତା ତା ମୁଣ୍ଡରେ ଖେଳିଗଲା ।

ରାତି ପାହି ଆସିଲା ବେଳକୁ ସୁବଳ ଆସି ପହଞ୍ଚି ଗଲା ତାର ଜାଲବନ୍ଧା ଧରି । ମାଳତୀ ଭବାଟ ଫିଟାଇ ଦେଇ ପଦାକୁ ଧାଇଁଗଲା ଯାଇ ବାହାରି ପଡ଼ିଲା । ସୁବଳ ତାକୁ ଦେଖି ହସି ହସି କହିଲା. "ନାବକେଳଳା ପାଣି ସେପରିଲେ ହରି" ମାଳତୀ କହିଲା, "ଆହା, ଧା ନାବକେଳଳ ? କୋଉ ଏକ ପ୍ରକାରୁ ପାଇଛ ସେ ଭୃଷ୍ଟି ଆଣି ତିନ ଉର୍ଦ୍ଧବାକୁ ବସିଲେଣି । ଏତେଟା ବଡ଼ ଝଡ଼ ତୋଫାନରେ କେବେ କିଏ ମାଛ ଧରିବାକୁ ଯାଆନ୍ତି ? ନ ମିଳିଲେ ସେ ମାଛ, ନ ହେଲେ ସେ ପଇସା ? କାହିଁକି ଆମ ଜୀବନ କଣ ଜୀବନ ନୁହେଁ ?" ସୁବଳ କହିଲା, "ନାହିଁ ଲୋ, ଅ.ଛ କ ଦୁର୍ଯୋଗରେ ବାହାରିଥିଲି, ମାଛ ପାଇ କିଛି ନାହିଁ ! ଖାଲି ଦୁଆଁ ବୁଲି ଆସି ହେଲି, ଲାଭ ମଧ୍ୟରେ ସେ ଜାଲ ଖଣ୍ଡି ଛିଣ୍ଡିଯାଇଛି ।"

ଏକଥା ଶୁଣି ମାଳତୀର ମୁଖ ଲଜ୍ଜାର ଅରୁଣ ରଞ୍ଜିଲା। ସେ ମୁହଁଟାଏ ତଳ କାଦାକା ଭଳି ଘର ଭିତରକୁ ଚାଲିଗଲା। କିନ୍ତୁ ସମସ୍ତ ପରେ ଆସି କହିଲା, "ଏ, ସୁଶୀଳକା, ପାଞ୍ଚଟି ଆଜ ରାତିରେ ସଜ୍ଜାକଲ।" "ଏଁ ଦେଦେନେବେଲେ?" ଏତେବେ କଣ୍ଟକରେ ପୁଷ୍କଳ ଲୁହଟୋପାଏ ବୁହି ଯାଉଥିଲା, ପରେ କହିଲା, "ଭଗବାନଙ୍କ ଏକ ଶମ୍ଭୁର' ଦଳ, ଲୁ ଦା, ପିଲ ସେ'ଟାଙ୍କୁ ଦେଖିଆସ, ମୁଁ ମଥା ଉଠାଇବାର ଦାବିହୁ ନାହିଁ। ଆମର ଚାଙ୍କୋଟି ପିଲ ଥିଲେ, ଏବେ ଦେଖ ମାତ୍ରଟି ନାହିଁ। ଜଗନ୍ନାଥଙ୍କ ଦୟା ହେଲେ, ସେଥିରି ଉପାୟ କଣ? ଆଉ ସୁମନବାକୁ ଦେବ ବାନ୍ଧି, ଲୁ ଦା"

ପୁଷ୍କଳର କଥା ଶୁଣି ମାଳତୀ ମୁଣ୍ଡରୁ ବଂଶବୋଝଟାଏ ଖସି ଗଲା। ସେ ପୁଷ୍କଳକୁ ପିଲଙ୍କ ଖେଳିବା ସ୍ଥାନକୁ ଟାଣିନେଇ କହିଲା, "ଦେଖ ଦେଖ୍ ଭାଏ କଣ?" ପୁଷ୍କଳ ଆଉ କଥା କହିପାରିଲା ନାହିଁ। ପୁଷ୍କଳ ମାଳତୀକୁ ନିଜ ଗୃହ ଭିତରକୁ ଆମନ୍ତ୍ରଣ ଆସିଲା।

ସମାପ୍ତ



କଟକ ପ୍ରଭାତ ପ୍ରେସରେ ପଣ୍ଡିତ ଶ୍ରୀ ଭୁବନେଶ୍ୱର ମିଶ୍ରଙ୍କ ଦ୍ୱାରା
ମୁଦ୍ରିତ—୧୯୭୪